





ନୂଆ ପାର୍ଲେ

# ପପିନସ

ଫଳର ସ୍ୱାଦଭରା ମିଠା ଗୋଳି

କାଗଜିଲେମ୍ବୁ କମଳାଲେମ୍ବୁ ମୌସମ୍ବି, ସପୁରି ଓ ରାସ୍ପବେରି — ୫ ଫଳର ସ୍ୱାଦରେ ଭରା ୧୨ ସୁସ୍ୱାଦୁ ଗୋଲି — ପ୍ରତ୍ୟେକଟି ଚମତ୍କାର, ଅଳ୍ପ ଦାମର ...

ପପିନ୍ସ ... ସ୍ୱାଦ ଚାଖନ୍ତୁ, ପାଞ୍ଚ ଫଳର ମଜା ଉପଭୋଗ କରନ୍ତୁ

everest/122b/PP-O



# ଜହ୍ନ ମାମୁଁ

ସ୍ଥାପକ : ନାଗିରେଡ୍ଡୀ

ସଂଚାଳକ : 'ଚକ୍ରପାଣୀ'

---

ଏହି ମାସର ବେତାଳ କଥା 'ଯଶ ସାଧନ'ରେ ଏକ ଉତ୍ତମ ଘଟଣା ବିଷୟରେ ବର୍ଣ୍ଣନା କରା ଯାଇଛି । ଏହି କଥାର ନାୟକ ଗୁଣକୀର୍ତ୍ତି କିପରି ଜଣେ ସର୍ବ ଗୁଣପୂର୍ଣ୍ଣ ବ୍ୟକ୍ତି ଥିଲେ । ସେ ବିଷୟରେ ବର୍ଣ୍ଣନା କରା ଯାଇଛି ।

ଏକ ଉତ୍ତମ ଶାସନକୁ ନଷ୍ଟ କରିବା ସକାଶେ କିପରି କୁଚକ୍ର ଏବଂ ଷଡ଼ଯନ୍ତ୍ର ସୃଷ୍ଟି କରା ଯାଇଥାଏ, ଦିବୋଦାସଙ୍କ କଥା (ଶିବପୁରାଣ)ରେ ଉଲ୍ଲେଖ କରା ଯାଇଛି ।

---

ବର୍ଷ : ୨ ଜାନୁଆରୀ ୧୯୭୩ ଅଙ୍କ : ୧



# ଅମର ବାଣୀ

ଶତ ନିଷ୍କୋ ଧନାଢ୍ୟଷ୍ଟ, ଶତ ଗ୍ରାମେଣ ଭୂପତିଃ,
ଶତାଶ୍ୱଃ କ୍ଷତ୍ରିୟୋ ରାଜା, ଶତଶ୍ଳୋକେନ ପଣ୍ଡିତଃ । ॥ ୧ ॥

[ ଶହେ ସ୍ୱର୍ଣ୍ଣମୁଦ୍ରା ଥିବା ବ୍ୟକ୍ତି ଧନୀ, ଶହେ ଗ୍ରାମ ଥିବା ବ୍ୟକ୍ତି ଭୂପତି, ଶହେ ଘୋଡ଼ାଥିବା କ୍ଷତ୍ରିୟ ରଜା ଓ ଶହେ ଶ୍ଳୋକ ଜାଣିଥିବା ବ୍ୟକ୍ତି ପଣ୍ଡିତ ହୋଇଥାଏ । ]

ଶକଟମ୍ ପଞ୍ଚ ହସ୍ତେଷୁ, ଦଶ ହସ୍ତେଷୁ ବାଜିନମ୍,
ଗଜମ୍ ହସ୍ତ ସହସ୍ରେଷୁ, ଦୁର୍ଜନମ୍ ଦୂରତଃ ତ୍ୟଜେତ୍ । ॥ ୨ ॥

[ ଗାଡ଼ିକୁ ପାଞ୍ଚହାତ, ଘୋଡ଼ାକୁ ଦଶହାତ, ହାତୀକୁ ହଜାରେ ହାତ ତଥା ଦୁର୍ଜନକୁ ବହୁତ ଦୂରରେ ରଖିବା ଉଚିତ । ]

କୃଷିତୋ ନାସ୍ତି ଦୁର୍ଭିକ୍ଷମ୍,
ଜପତୋ ନାସ୍ତି ପାତକମ୍,
ମୌନେନ କଲହୋ ନାସ୍ତି,
ନାସ୍ତି ଜାଗରତୋ ଭୟମ୍ । ॥ ୩ ॥

[ ଯେଉଁ ବ୍ୟକ୍ତି ଭଲ କୃଷକରେ, ତା ପାଇଁ ଦୁର୍ଭିକ୍ଷର ଭୟ ନଥାଏ, ଯେଉଁ ବ୍ୟକ୍ତି ଜପକରେ ତାକୁ ପାପ ଛୁଇଁ ନଥାଏ, ଯେଉଁ ବ୍ୟକ୍ତି ମୌନ ରହେ କଲହ ହୋଇ ନଥାଏ, ଏହିପରି ପ୍ରତ୍ୟେକ ସମୟରେ ଜାଗ୍ରତ ରହିଲେ ଭୟ ନଥାଏ । ]

ପ୍ରମାଣ




# କୃଷକ ଓ ଗଧିଆ

ଫରାସୀ ଦେଶରେ ଆଜି ଯେଉଁ ବିସ୍ତାର ପଡ଼ିଆଟି ଅଛି, ବହୁବର୍ଷ ପୂର୍ବେ ସେଠାରେ ବଡ଼ ଜଙ୍ଗଲ ଥିଲା । ସେହି ଜଙ୍ଗଲଟି ପୋଡ଼ି-ଯିବାର କାରଣ ଆଞ୍ଚଳିକ ଲୋକମାନେ ଏପରି ଦର୍ଶାଉଛନ୍ତି :

ଜଙ୍ଗଲ ପାଖରେ ଜଣେ ଗରିବ କୃଷକ ନିଜ ପତ୍ନୀସହ ବାସ କରୁଥିଲା । ଦିନେ ସେହି କୃଷକ ଦୁଇଟି ରୁଟି କିଣି ଜଙ୍ଗଲ ମଝିରେ ଆସୁଥିବା ସମୟରେ ଏକ ବଡ଼ ଗଧିଆ ତାକୁ ଆକ୍ରମଣ କରିବାକୁ ଚେଷ୍ଟାକଲା । ତା କଳ-ପାଟିର ଦାନ୍ତ ଗୁଡ଼ିକ ବଡ଼ ଭୟଙ୍କର ଥିଲା ।

ଗଧିଆକୁ ଦେଖି କୃଷକ ଭୟରେ ଥରି ଉଠିଲା । ଧାଇଁ ପଳାଇବାକୁ ଉପାୟ ନଥିଲା କି ଗଧିଆକୁ ମାରିବା ମଧ୍ୟ ସମ୍ଭବ ନଥିଲା । ଏହି ସମୟରେ ତା ମନରେ ଏକ ବିଚାର ଆସିଲା । ସେ ଗଧିଆକୁ କହିଲା—"ଆରେ ଗଧିଆ, ତତେ ନିଶ୍ଚୟ ଭୋକ ହେଉଥିବ । ଏ ରୁଟି ଖଣ୍ଡିଟି ଖାଇ ଦେ ।" ଏପରି କହି ଖଣ୍ଡେ ରୁଟି ତା ଆଗରେ ପକାଇ ଦେଲା । ଗଧିଆଟି ଶ୍ରଦ୍ଧାରେ ରୁଟି ଖାଇଲା । ସୁଯୋଗ ପାଇ କୃଷକଟି ଆଗକୁ ବଢ଼ିଲା ।

ଅଳ୍ପ ଦୂର ଯିବା ପରେ ଦେଖିଲା ଯେ ଗଧିଆଟି ତା ପଛରେ ଆସୁଛି । "ଗଧିଆ, ତୁ ବଡ଼ ଭଲ," କହି ଖଣ୍ଡେ ରୁଟି ତା ଆଗରେ ପକାଇ ଧାଇଁବାକୁ ଲାଗିଲା ।

ମାତ୍ର ଗଧିଆ ତା ପିଛା ଛାଡ଼ିଲା ନାହିଁ । କୃଷକ ଖଣ୍ଡେ ଖଣ୍ଡେ ରୁଟି ପକାଉଥାଏ ଓ ଗଧିଆ ଖାଇ ଖାଇ ତା ପଛରେ ଚାଲିଥାଏ ।

ଶେଷରେ ସେ ଧାଇଁ ଧାଇଁ ନିଜ ଘର ପାଖରେ ପହଞ୍ଚିଲା । ସେତେବେଳେ ତା ହାତରେ କେବଳ ଖଣ୍ଡିଏ ରୁଟି ଥିଲା । ଗଧିଆ ମଧ୍ୟ କୃଷକ ଘର ଆଗରେ ଆସି ବସି ରହିଲା ।

ଫରାସୀ ଲୋକ-କଥା




କୃଷକର ପତ୍ନୀ ପଚାରିଲା—"ରୁଟି କାହିଁ ? ରୁଟି ସହିତ କାଞ୍ଜି ମିଶାଇ ଖାଇବା ପାଇଁ ମୁଁ ତିଆରି କରିଛି ।"

ଭୟରେ କୃଷକର ଶ୍ୱାସରୁଦ୍ଧ ହୋଇ ଯାଉଥିଲା । ଏଣୁ ସେ ଦ୍ୱାର ମୁହଁରେ ବସିଥିବା ଗଧିଆ ଆଡ଼କୁ ଆଙ୍ଗୁଠି ଦେଖାଇଲା ।

"ଆରେ, ଗଧିଆ ! ଏଣୁ ତୁମେ ଧାଇଁ ଚାଲି ଆସିଛ ? ଯାହାହେଉ ତୁମେ ମଙ୍ଗଳରେ ପହଞ୍ଚିଗଲ ।" କୃଷକର ପତ୍ନୀ କହିଲା ।

"ମୁଁ ଯେଉଁ ରୁଟି କିଣିଲି, ଗଧିଆ ମୁହଁରେ ଦେଲି ।" କୃଷକ ଜଣାଇଲା ।

"ରୁଟି ଗୁଡ଼ିକୁ ଏହି ଗଧିଆ ଖାଇ ଦେଇଛି ? ତୁମେ କବାଟ ବନ୍ଦ କରିଦିଅ । ନଚେତ୍ ସେ ତୁମକୁ ଓ ମତେ ଖାଇଦେବ ।" କୃଷକର ପତ୍ନୀ କହିଲା ।

କୃଷକ ହାତରେ ଥିବା ରୁଟି ଖଣ୍ଡଟି ଗଧିଆ ମୁହଁରେ ଦେଇ କହିଲା—"ଗଧିଆ, ଏ ଖଣ୍ଡଟି ମଧ ଖାଇ ଦେ ।" ତା ପରେ ସେହି ଭୟାତୁର କୃଷକ ତରବର ହୋଇ କବାଟ ବନ୍ଦ କରିଦେଲା ।

ଗଧିଆଟି ସେହି ରୁଟି ଖଣ୍ଡଟି ଖାଇ ବହୁତ ସମୟ ସେଠାରେ ବସି ରହିଲା । ଖାଇବା ସମୟରେ କୃଷକ ପତ୍ନୀ ଗଧିଆଟିକୁ ଅଜସ୍ର ଗାଳିଦେଲା । କୃଷକ ଦମ୍ପତିର କଥାବାର୍ତ୍ତା ବନ୍ଦ ହେବା ପରେ ଗଧିଆ ମଧ ଜଙ୍ଗଲକୁ ଚାଲିଗଲା ।

ଏହାପରେ କେତେମାସ ବିତିଗଲା । କୃଷକ ଦମ୍ପତି ବଡ଼ ପରିଶ୍ରମ କରି ଅଳ୍ପ ଧନ ଏକାଠି କଲେ ଓ ଗୋଟିଏ ଉତ୍ତମ ଗାଈ କିଣିବାକୁ ନିଶ୍ଚୟ କଲେ ।

କୃଷକ ସେହି ଧନ ନେଇ ଜଙ୍ଗଲ ବାଟରେ ହାଟକୁ ଗଲା । ସେ ହାଟସାରା ବୁଲି ବୁଲି ଅଳ୍ପ ଧନରେ କମ୍ ବୟସର ଗୋଟିଏ ଗାଈ କିଣିବାକୁ ଠିକ୍ କଲା । ଏ ସମୟରେ ଜଣେ ଦୁର୍ବଳ ଲମ୍ବା ଲୋକ ତା ପାଖକୁ ଆସିଲା । ସେ କୃଷକକୁ ପଚାରିଲା—"କଣ ତୁମେ ଗାଈ କିଣିବାକୁ ଚାହୁଁଛ ?"

"ଆଜ୍ଞା, ହଁ ! କିନ୍ତୁ ବଢ଼ିଆ ଗାଈ କିଣିବା ପାଇଁ ମୋ ପାଖରେ ବେଶି ଧନ ନାହିଁ ।" କୃଷକ ଉତ୍ତର ଦେଲା ।

"ମୋ ଘରେ ବହୁତ ଗାଈ ଅଛନ୍ତି । ସେଥିମଧ୍ୟରୁ ବୋଧହୁଏ ତୁମକୁ ଗୋଟିଏ ପସନ୍ଦ ଆସିପାରେ ।" ସେ ଭଦ୍ରବ୍ୟକ୍ତି କହିଲେ ।

ଦୁହେଁ ଏକ ସୁନ୍ଦର ଘରେ ପହଞ୍ଚିଲେ । ସେହି ଘର ପଛପଟେ ଗାଈ ସକାଶେ ଏକ ଗୁହାଳ ଘରଟିଏ ଥିଲା । ସେଠାରେ ବହୁତ ଗାଈ ଥିଲେ ।

"ତୁମେ ସବୁଠାରୁ ଭଲ ଗାଈ ବେଛ ।" ସେ ଭଦ୍ରବ୍ୟକ୍ତି କହିଲେ । କୃଷକ ଏହାଶୁଣି ଆନନ୍ଦିତ ହେଲା । ସେ ଭାବିଲା ଯେ ଏପରି ସୁଯୋଗ ବାରମ୍ବାର ଆସେନାହିଁ । ଏଣୁ କୃଷକ ଗୋଟିଏ ବଢ଼ିଆ ଗାଈ ଠିକ୍ କଲା ।

"ତୁମେ ଗୋଟିଏ ବଢ଼ିଆ ଗାଈ ଠିକ୍ କଲ ।" ଏହିକଥା କହି ସେ ଭଦ୍ରବ୍ୟକ୍ତି ଗାଈ ବେକରେ ଦଉଡ଼ି ବାନ୍ଧି କୃଷକ ହାତରେ ଗାଈଟିକୁ ଧରାଇଲେ ।

ଏହାପରେ ସେହି ଭଦ୍ରବ୍ୟକ୍ତି ଏକ ଡ଼ବା ବାହାର କରି କହିଲେ—"ଏହି ଡ଼ବାଟି ତୁମ ପତ୍ନୀଙ୍କୁ ମୋ ତରଫରୁ ଉପହାର ଦେବ । ଏଥିରେ କଣ ଅଛି ଆଉ କେହି ନଦେଖି କେବଳ ତୁମ ପତ୍ନୀ ଏକାନ୍ତରେ ଦେଖିବାକୁ ହେବ । ବୁଝିଲ ।"

କୃଷକ ଆଶ୍ଚର୍ଯ୍ୟ ହୋଇ ଡ଼ବାଟି ଧରି ପଚାରିଲା—"ଆପଣଙ୍କର ଆମ ପ୍ରତି କାହିଁକି ଏପରି ଦୟା ?"

ଭଦ୍ରବ୍ୟକ୍ତି ହସିଦେଇ କହିଲେ—"ତୁମେ ଦିନେ ଦୟାବହି ଦୁଇଟି ରୁଟି ଦେଇଥିଲ ନା? ମୁଁ ସେହି ଗଧିଆ ମୁଁ ଭଲ ଲୋକଙ୍କ ପାଖରେ



ଭଲ ଓ ଖରାପଙ୍କ ପାଖରେ ଖରାପ । ଏବେ ତୁମେ ଯାଅ, ଭଗବାନ ତୁମର ମଙ୍ଗଳ କରନ୍ତୁ ।"

ଏହିକଥା ଶୁଣି କୃଷକ ବିସ୍ମିତ ତଥା ଆନନ୍ଦିତ ହେଲା । ତା ପରେ ଗାଈଟିକୁ ଧରି ସେ ସେହି ଜଙ୍ଗଲ ଦେଇ ଘରକୁ ଚାଲିଗଲା ।

ରାସ୍ତାରେ କୃଷକ ମନରେ ଡ଼ବା ଭିତରେ କଣ ଅଛି ଜାଣିବା ପାଇଁ ଇଚ୍ଛା ହେଲା । ସେ ଭଦ୍ରବ୍ୟକ୍ତି କାହିଁକି ତା ପତ୍ନୀକୁ ଏକାନ୍ତରେ ଡ଼ବା ଖୋଲିବାକୁ କହିଲା ? କୃଷକ ଡ଼ବାଟିକୁ ଭଲଭାବେ ଓଲଟ-ପାଲଟ କରି ଦେଖିଲା । ତାକୁ ଶୁଙ୍ଘିବାରୁ ମଧ୍ୟ ସେଥିରେ କଣ ଥିବାପରି ଜଣା ପଡ଼ିଲା ନାହିଁ ?

କୃଷକ ଭାବିଲା ଯେ ତା ପତ୍ନୀ ଓ ତା ମଧ୍ୟରେ ସେପରି ପ୍ରଭେଦ ନାହିଁ । ଏଣୁ ତା ପତ୍ନୀ ଏଥିରେ ଯାହାଥିବ ତାକୁ ନିଶ୍ଚୟ କହିଦେବ । ଏଣୁ ଘରେ ପହଞ୍ଚିବା ପର୍ଯ୍ୟନ୍ତ କାହିଁକି ଅପେକ୍ଷା କରିବ ? ଏପରି ଭାବି କୃଷକ ଡ଼ବା ଭିତରେ ଥିବା ଜିନିଷକୁ ଦେଖିବା ପାଇଁ ନିଶ୍ଚୟ କଲା । ସେ ଗାଈଟିକୁ ଚରିବା ପାଇଁ ଛାଡ଼ିଦେଲା, ଗୋଟିଏ ଗଛତଳେ ବସି ସାବଧାନରେ ଡ଼ବାଟି ଖୋଲିଲା । ହଠାତ୍ ସେହି ଡ଼ବାଟି ଫିଙ୍ଗିଦେଇ ସେ ଦୂରକୁ ଚାଲିଗଲା । କାରଣ ଡ଼ବା ଭିତରୁ ଏକ ଭୟଙ୍କର ଅଗ୍ନିଶିଖା ଉଠି ଆଖପାଖର ଗଛଡ଼ାଳ ସବୁ ପୋଡ଼ିଦେଲା ।

"ବାପ୍ ରେ ! ମୋ ପତ୍ନୀ ଯଦି ଏହି ଡ଼ବା ଖୋଲିଥାନ୍ତା, ତାର ମୁହଁ ଓ ବାଳ ନିଶ୍ଚୟ ପୋଡ଼ି ଯାଇଥାନ୍ତା । ସେଦିନ ରାତିରେ ମୋ ପତ୍ନୀ ଗଧିଆକୁ ଗାଳି ଦେଇଥିଲା, ଏଣୁ ପ୍ରତିଶୋଧ ନେବାପାଇଁ ସେହି ଗଧିଆଟି ଏପରି ଉପାୟ ଠିକ୍ କରିଥିବ ।" କୃଷକ ନିଜ ମନରେ ବାରମ୍ବାର ଭାବିଲା ।

ହୁହୁ ହୋଇ ଗଛଗୁଡ଼ିକ ଜଳୁଥିଲା । ଏଣୁ କୃଷକ ନିଜ ଗାଈକୁ ଧରି ଘରକୁ ଚାଲିଗଲା । ସେହି ଅଗ୍ନିଶିଖା ସାରା ଜଙ୍ଗଲକୁ ଜଳାଇ ଦେଲା । ମାତ୍ର କୃଷକ ଓ ତା ପତ୍ନୀ ଗାଈ ଯୋଗୁଁ ବହୁତ ଦିନ ପର୍ଯ୍ୟନ୍ତ ସୁଖରେ ରହିଲେ ।





# ପରିଶ୍ରମର ଫଳ

ରାମପୁର ଗାଁରେ କୃଷ୍ଣଦାସ ତଥା ମହବୁବ ନାମକ ଦୁଇଜଣ ମିତ୍ର ମିଶିକରି ଗୋଟିଏ ବଗିଚା କିଣିଲେ ।

କୃଷ୍ଣଦାସ କୃଷିକାମ ମୋଟେ ଜାଣି ନଥିଲା । ସେ ସର୍ବଦା ଭଗବାନଙ୍କୁ ଧ୍ୟାନ କରି ତାଙ୍କ ଉପରେ ସମସ୍ତ ଭାର ଲଦି ଦେଇଥିଲା ।

ମହବୁବ କୃଷିକାମ ଭଲରୂପେ ଜାଣିଥିଲା । ସେ ଦିନସାରା କୃଷି କରୁଥିଲା । ଘାସ କାଟିବା, ଗଛର ମନ୍ଦା ତିଆରି କରିବା ଓ ପାଣି ଛିଞ୍ଚିବାରେ ତାର ଦିନ ବିତି ଯାଉଥିଲା ।

ସେହିବର୍ଷ ବଗିଚାରେ ବହୁତ ଫୁଲ-ଫଳ ହେଲା । ସବୁ ବିକିବା ଦ୍ୱାରା ଉଚିତ ପଇସା ମିଳିଲା । ଏବେ ତାଙ୍କ ଆଗରେ ସେ ପଇସା ବାଣ୍ଟିବା ପାଇଁ ସମସ୍ୟା ଆସି ପଡ଼ିଥିଲା !

ସେହି ଧନ ସମାନଭାବେ ବାଣ୍ଟିବା ପାଇଁ ଉଭୟେ ରାଜି ହେଲେନାହିଁ ।

"ମୁଁ କଠିଣ ପରିଶ୍ରମ କରିବାରୁ ବଗିଚାରେ ବେଶିଫଳ ହେଲା । ଅତଏବ ମତେ ଅଧିକ ଭାଗ ମିଳିବା ଦରକାର ।" ମହବୁବ କହିଲା ।

"ମୁଁ ପବିତ୍ର ମନରେ ଭଗବାନଙ୍କୁ ଧ୍ୟାନ କରିବାରୁ ସେ ମତେ ଅନୁଗ୍ରହ କରି ବେଶିଫଳ ଦେଲେ, ଏଣୁ ମତେ ବେଶି ଭାଗ ମିଳିବା କଥା ।" କୃଷ୍ଣଦାସ କହିଲା ।

ଦିହେଁ କିଛିକ୍ଷଣ ବାଦ-ବିବାଦ କରି ଶେଷରେ ଗାଁର ମୁଖିଆ ପାଖକୁ ଗଲେ । ମୁଖିଆ ତାଙ୍କ କଥାଶୁଣି କହିଲା—"ମୁଁ ତୁମ ଦୁଇଜଣଙ୍କୁ ଏକ ଛୋଟ କାମ ଦେବି । ଯିଏ ସେହି କାମ ପୂର୍ଣ୍ଣକରି କାଲି ସକାଳୁ ମତେ ଦେଖାଇବ ମୁଁ କାହାକୁ କେତେ ଭାଗ ମିଳିବ କହିଦେବି ।"

ଏହାପରେ ପ୍ରତ୍ୟେକଙ୍କୁ ଦୁଇ-ଦୁଇ ବସ୍ତା ଧାନ ଦେଇ କହିଲା—"ଏହି ଧାନ କୁଟି କାଲି ସକାଳୁ ଚାଉଳ ନେଇଆସ ।"

ସୁରେନ୍ଦ୍ର

ସେହି ବସ୍ତା ଗୁଡ଼ିକୁ ନେଇ କୃଷ୍ଣଦାସ ଓ ମହବୁବ ନିଜ ନିଜ ଘରକୁ ଚାଲିଗଲେ ।

କୃଷ୍ଣଦାସ ଧାନ କୁଟିବା ଭାର ଭଗବାନଙ୍କ ଉପରେ ଛାଡ଼ିଦେଇ ଅଳ୍ପ ସମୟ ଈଶ୍ୱରଙ୍କୁ ଧ୍ୟାନ କରି ଶୋଇ ପଡ଼ିଲା ।

ମହବୁବ ରାତିସାରା କାମକରି ଗୋଟିଏ ବସ୍ତା ଧାନ କୁଟି ଚାଉଳ କଲା ।

ଅଧରାତି ସମୟରେ ମୁଖିଆ ଉଭୟଙ୍କ ଘର ପାଖକୁ ଗଲା । ସେ ଦେଖିଲା ଯେ କୃଷ୍ଣଦାସ ଘରୁ ଧାନକୁଟା ଶବ୍ଦ ଶୁଣା ଯାଉନାହିଁ । କିନ୍ତୁ ମହବୁବ ଘରେ କୁଟିବା ଶବ୍ଦ ହେଉଥିଲା ।

ପରଦିନ ସକାଳୁ କୃଷ୍ଣଦାସ ତଥା ମହବୁବ ନିଜ ନିଜ ବସ୍ତାସହ ମୁଖିଆ ଘରେ ପହଞ୍ଚିଲେ । ମୁଖିଆ କୃଷ୍ଣଦାସର ବସ୍ତା ଖୋଲି ଦେଖିବାରୁ ସେଥିରେ ଗୋଟିଏ ସୁଦ୍ଧା ଚାଉଳ ନଥିଲା । କୃଷ୍ଣଦାସ ଭାବିଥିଲା ଯେ ଭଗବାନଙ୍କ ଦୟାରୁ ସବୁ ଧାନ ଚାଉଳ ହୋଇ ଯାଇଥିବ । କିନ୍ତୁ ବସ୍ତାରେ ଧାନ ଦେଖି ତାକୁ ଆଶ୍ଚର୍ଯ୍ୟ ଲାଗିଲା ।

ମହବୁବ ଆଣିଥିବା ବସ୍ତାର ଗୋଟିକରେ ଚାଉଳ ତଥା ଅନ୍ୟଟିରେ ଧାନ ଥିଲା ।

"କୃଷ୍ଣଦାସ ଦେଖୁଛ ନା? ପରିଶ୍ରମ ବିନା ଫଳ ମିଳି ନଥାଏ । ତୁମେ ଭଗବାନଙ୍କ ପ୍ରତି ବିଶ୍ୱାସ କଲ, ମାତ୍ର ତୁମକୁ ଭଗବାନ ଅନୁଗ୍ରହ କଲେନାହିଁ । ଯଦି ଭଗବାନ ଅନୁଗ୍ରହ କରିଥାନ୍ତେ, ତେବେ ତୁମଦ୍ୱାରା କାମ କରାଇ ତୁମକୁ ଫଳ ଦେଇଥାନ୍ତେ । ବଗିଚାରୁ ଯାହା ଆଦାୟ ହେଲା ତାହା କେବଳ ମହବୁବର ପରିଶ୍ରମର ଫଳ । ତୁମେ ମଧ୍ୟ ଯଦି ମହବୁବ ସଙ୍ଗେ ପରିଶ୍ରମ କରିଥାନ୍ତ ବଗିଚାରୁ ବେଶି ଆଦାୟ ହୋଇଥାନ୍ତା । ଭବିଷ୍ୟତରେ ମିଶିକରି କାମ କର ଓ ଯାହା ଆଦାୟ ହେବ ସମାନ ଭାବେ ବାଣ୍ଟି ନିଅ ।" ମୁଖିଆ ବୁଝାଇଲା ।

ଏହାପରେ କୃଷ୍ଣଦାସ ମଧ୍ୟ ମହବୁବ ସଙ୍ଗେ ମିଶି ସବୁ କାମ କଲା । ଯାହା ଆଦାୟ ହେଲା ବାଣ୍ଟିବା ସମୟରେ ଆଉ ମୋଟେ ଗଣ୍ଡ-ଗୋଳ ହେଲାନାହିଁ ।






# ଯକ୍ଷ ପର୍ବତ

[ ୭ ]

[ ଜଟାଧାରୀ ଭୂତକୁ ଦେଖିବା ମାତ୍ରେ ଡାକୁମାନେ ଧାଇଁବାକୁ ଲଗିଲେ । ଆଉ କେତେକ ବସ୍ତା ଗୁଡ଼ିକୁ ନଦୀରେ ପକାଇବାକୁ ଗଲେ । ଖଡ୍‌ଗବର୍ମା ତଥା ଜୀବଦତ୍ତ ଗୁମ୍ଫା ପାଖରେ ପହଞ୍ଚିବା ସମୟରେ ଜଟାଧାରୀ ଭୂତ ଯେଉଁ ଚେତାବନୀ ଦେଲା, ତାହା ଶୁଣି ମାନ୍ତ୍ରିକ ସେମାନଙ୍କୁ ଭସ୍ମ କରିଦେବାପାଇଁ କହି ଗୁମ୍ଫା ଭିତରକୁ ଚାଲିଗଲା—ଏହା ପରେ··· ]

ଜୀବଦତ୍ତ ଭିତରକୁ ଯାଇ ମାନ୍ତ୍ରିକକୁ ବନ୍ଦୀ କରିବା ନା ସେ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରିବା ବିଷୟରେ ଭାବୁଥିବା ସମୟରେ ଖଡ୍‌ଗବର୍ମା ଶଙ୍କୋଚିତ ଦୃଷ୍ଟିରେ ଗୁମ୍ଫାକୁ ଦେଖି କହିଲେ—"ଜୀବଦତ୍ତ, ବୋଧହୁଏ, ତୁମ ବେଶ ଦେଖି ମାନ୍ତ୍ରିକ ଡରିଗଲା । ସେ ଏହା ଭାବି ଗୁମ୍ଫାକୁ ଚାଲିଗଲା ଯେ ତୁମେ ମନ୍ତ୍ର-ତନ୍ତ୍ର ଜାଣିଛ ଓ ମନ୍ତ୍ର ବଳରେ ତୁମେ ତାର କ୍ଷତି କରିବ ଯଦି ସେ କଣ କରିବ? ବର୍ତ୍ତମାନ ଆମକୁ କଣ କରିବାକୁ ପଡ଼ିବ?"

ଜୀବଦତ୍ତ ଠିକ୍ ସେତେବେଳେ ଦେଖିଲେ ଯେ ଜଟାଧାରୀ ଭୂତ ଗଣ୍ଡାଜାତ ଲୋକଙ୍କ କବଳରୁ ମୁକ୍ତି ପାଇବାପାଇଁ ଗର୍ଜନ କରି ଏପଟେ-ସେପଟେ ଧାଉଁଛି, ସେ ହସିଦେଇ କହିଲେ—"ମୁଁ ଏଥିସକାଶେ ମୁଣ୍ଡରେ ଚୁଳ ଓ ହାତରେ ମନ୍ତ୍ର-ଦଣ୍ଡ ଧାରଣ କରିଛି ଯେ



ସମସ୍ତେ ଏହାଦେଖି ଯେପରି କହିବେ ମୁଁ ଜଣେ କ୍ଷତ୍ରିୟ ଓ ମାନ୍ତ୍ରିକ ମଧ୍ୟ। ଏଣୁ ମାନ୍ତ୍ରିକ ଅତି ସହଜରେ ଜାଣି ପାରିଥିବ ଯେ ମୁଁ ମଧ୍ୟ ମନ୍ତ୍ର-ତନ୍ତ୍ର ଜାଣେ। ବର୍ତ୍ତମାନ ଆମେ କଣ କରିବା? ଆମେ ନିଜ ରାସ୍ତାରେ ଯିବା ପୂର୍ବରୁ ଏହି ମାନ୍ତ୍ରିକର ଖବର ନେବା ନିହାତି ଦରକାର?"

"ତେବେ କାହିଁକି ଡେରି କରିବା? କଣ ଗୁମ୍ଫା ଭିତରକୁ ଯିବା?" ଏହାକହି ଖଡ୍‌ଗବର୍ମା ଆଗକୁ ବଢ଼ିଲେ।

ଜୀବଦତ୍ତ ମଧ୍ୟ ଖଡ୍‌ଗବର୍ମା ସଙ୍ଗେ ଯାଉ ଯାଉ ଚତୁର୍ଦ୍ଦିଗକୁ ଲକ୍ଷ୍ୟ କରି ଗୋଟିଏ ଦାଗରେ ଦେଖିଲେ ଯେ ଜଟାଧାରୀ ଭୂତର ସମକକ୍ଷ କେହି ନଥିଲା। କେତେଲୋକ ଭୂତଠାରୁ ମାଡ଼ଖାଇ ପଡ଼ିଥିବା ସ୍ଥଳେ କେତେଜଣ ପୋଷାକରେ ଦାଉଦାଉ ନିଆଁ ଲାଗିବା ଫଳରେ ଭୂମିରେ ଗଡୁଥିଲେ। ଅନ୍ୟମାନେ ନଦୀ କୂଳକୁ ଧାଉଁଥିଲେ। ମାତ୍ର ଗଣ୍ଡାଜାତିର ତିନିଜଣ ଯୁବକ ଭୂତକୁ ସାହାସର ସହିତ ବର୍ଚ୍ଛା ପ୍ରହାର କରିବାପାଇଁ ପ୍ରସ୍ତୁତ ଥିଲେ। କିନ୍ତୁ ସେହି ଜଟାଧାରୀ ଭୂତ ସେମାନଙ୍କ ପ୍ରହାରରୁ ନିଜକୁ ବଞ୍ଚାଇ ଭୟରେ "ଗୁରୁଦେବ" ଡ଼ାକଦେଇ ଗୁମ୍ଫା ଅଭିମୁଖେ ଧାଇଁଲା।

"ବନ୍ଧୁ! ଏ କଣ ପ୍ରକୃତ ଭୂତ? ନା କଣ ମାନ୍ତ୍ରିକ ତାର ଏକ ଅନୁଚରକୁ ଏହି ବିକୃତ ବେଶ ପିନ୍ଧାଇ ଏହି କପଟ ନାଟକ ଖେଳୁଅଛି?" ଖଡ୍‌ଗବର୍ମା ପଚାରିଲେ।

"ମନୁଷ୍ୟ ଯଦି ଏପରି ଭୂତ ବ୍ୟବହାର କରେ ତାକୁ ଆମେ ଭୂତହିଁ କହିବା। ଦେଖ, ସେ ଆମ ଯୁବକମାନଙ୍କ ଠାରୁ ନିଜକୁ ବଞ୍ଚାଇ ଗୁମ୍ଫା ଅଭିମୁଖେ ଧାଉଁଛି।" ଏହାକହି ଜୀବଦତ୍ତ ଜଟାଧାରୀ ଭୂତକୁ ଧରିବାପାଇଁ ଧାଇଁଲେ। ଖଡ୍‌ଗବର୍ମା ମଧ୍ୟ ଜୀବଦତ୍ତଙ୍କ ପଛରେ ଗଲେ।

ଉଭୟେ ଗୁମ୍ଫା ପାଖରେ ପହଞ୍ଚିବା ଦେଖି ସେହି ଭୂତ ମାଙ୍କଡ଼ ପରି ସେଠାକାର ଚଟ୍ଟାଣ ଉପରେ ତତ୍‌କ୍ଷଣାତ୍ ଚଢ଼ିଗଲା। ତା ପଛରେ ଧାଉଁଥିବା ଗଣ୍ଡାଜାତିର ତିନିଜଣ ଯୁବକ ନିଜ ନିଜ ବାହନ ଉପରେ ବସି ତାକୁ ବର୍ଚ୍ଛାଦ୍ୱାରା ପ୍ରହାର କରିବାପାଇଁ ଧାଉଁଥିଲେ। ଜଣେ

ହଠାତ୍ ନିଜ ବର୍ଚ୍ଛା ଉଠାଇ ଭୂତର ପିଠିକୁ ଲକ୍ଷ୍ୟକରି ଫିଙ୍ଗିଲା । ବର୍ଚ୍ଛାଟି ପିଠିରେ ବାଜି ତଳେ ପଡ଼ିଗଲା ।

ଗଣ୍ଡାଜାତିର ଜଣେ ଯୁବକ ଜୀବଦତ୍ତ ପାଖକୁ ଯାଇ କହିଲା—"ଆଜ୍ଞା, ବଡ଼ ଭୁଲ ହୋଇ ଯାଇଛି । ଆମ ପାଖରେ ଟାଣ ଦଉଡ଼ି ଥିଲେ ତାକୁ ବାନ୍ଧି ଦିଅନ୍ତେ । ଜଣାପଡୁଛି ଯେ ଆମ ବର୍ଚ୍ଛା ପ୍ରହାରର କୌଣସି ପ୍ରଭାବ ସେହି ଭୂତ ଉପରେ ପଡ଼ିନାହିଁ । କାରଣ ତା ଶରୀରକୁ ଜଟା ଘେରି ରହିଛି ।"

"ଏହିଥର ଆମେ ସେହି ଭୂତକୁ ତୁ କହିବା ପ୍ରକାରେ ଦଉଡ଼ି ଫିଙ୍ଗି ବନ୍ଦୀ କରିବୁ । ତୁମେମାନେ ଏଠାରୁ ଯାଅ । ଆମେ ଗୁମ୍ଫାକୁ ଯାଇ ସେହି ଭୂତ ତଥା ମାନ୍ତ୍ରିକକୁ ମଧ୍ୟ ବନ୍ଦୀକରି ତଳକୁ ଫିଙ୍ଗିଦେବୁ ।" ଜୀବଦତ୍ତ ଏପରି କହିଲେ ।

ଜୀବଦତ୍ତ ତଥା ଖଡ୍ଗବର୍ମା ଚଟ୍ଟାଣ ଉପରେ ଚଢ଼ି ଗୁମ୍ଫା ପାଖରେ ପହଞ୍ଚି ଦେଖିଲେ ଯେ ଜଟାଧାରୀ ଭୂତ ଭିତରକୁ ଯାଇ ଏପରି କହୁଥିଲା—"ଗୁରୁଦେବ! ଏକସିଙ୍ଗିଆ ମଇଁଷି ଉପରେ ବସି ଆସିଥିବା ଯମଦୂତ ସହିତ ଆଉ ଦୁଇଜଣ ଲୋକ ମିଶି ଯାଇଛନ୍ତି । ସେମାନେ ଆମ ଗୁମ୍ଫାକୁ ଚାଲି ଆସୁଛନ୍ତି, ଚଞ୍ଚଳ ସେମାନଙ୍କୁ ଭସ୍ମ କରିଦିଅ ।"

କିନ୍ତୁ ଗୁମ୍ଫା ଭିତରୁ କୌଣସି ଉତ୍ତର ଆସିଲା ନାହିଁ । ସେହି ଜଟାଧାରୀ ଭୂତ ଭୟରେ



ଥରିଯାଇ ପଛକୁ ହଠାତ୍ ଚାହିଁଦେଲା । ତାର ଲକ୍ଷ୍ୟ ଗୁମ୍ଫାକୁ ଆସୁଥିବା ଜୀବଦତ୍ତ ଓ ଖଡ୍ଗବର୍ମାଙ୍କ ଉପରେ ପଡ଼ିଲା । ତତ୍‌କ୍ଷଣାତ୍ ସେ ଜୋରରେ ଚିତ୍କାର କରି ଉଠିଲା ।

"ଆରେ ଭୂତ! ପଳାଉଛୁ କାହିଁକି । ଆମେ ତୋ ଗୁରୁର ଗୁରୁ । ତୁ ନିଜ ଗୁରୁକୁ ମଧ୍ୟ ବାହାରକୁ ଡାକିଆଣ ।" ଏହା କହି ଜୀବଦତ୍ତ ହାତରେ ଦଣ୍ଡା ଉଠାଇ ଭୂତ ପାଖକୁ ଗଲେ । ସେହି ସମୟରେ ଗୁମ୍ଫା ଭିତରେ ସେମାନେ କଥାବାର୍ତ୍ତା ହେବାର ଶୁଣିଲେ "ଆଜ୍ଞା, ହଁ" କହି ଭୂତ ପୁଣି ଗୁମ୍ଫା ଭିତରକୁ ଚାଲିଗଲା ।

ପର ମୁହୂର୍ତ୍ତରେ ଜୀବଦତ୍ତ ଓ ଖଡ୍ଗବର୍ମା ଭିତରକୁ ଗଲେ । କିନ୍ତୁ ତାଙ୍କୁ ସେହି ଭୂତ



ଦେଖାଗଲା ନାହିଁ। ଗୁମ୍ଫା ମଝିରେ ଗୃର-ପାଞ୍ଚ ଫୁଟ ଓସାରର ଏକ କୁଣ୍ଡରୁ ଅଗ୍ନିଶିଖା ଉପରକୁ ଉଠୁଥିଲା। ଅଳ୍ପ ଦୂରରେ ତେଲ ଜର୍ଜରିତ ଦାହୁଡ଼ି ସେଠାରେ ପଡ଼ିଥିଲା। ତାହାର ଆଲୋକରେ ଖଡ୍ଗବର୍ମା ଓ ଜୀବଦତ୍ତ ଗୁମ୍ଫା ଭିତରେ ଭୂତ ଓ ମାନ୍ତ୍ରିକକୁ ଖୋଜିଲେ। ଦଶ-ବାର ଫୁଟ ଓସାର ଓ ଗୋଡ଼ିଏ ଫୁଟ ଲମ୍ବ ଗୁମ୍ଫାରେ ଆଉ କୌଣସି ଦ୍ୱାର ଦେଖାଗଲା ନାହିଁ। ସେମାନେ ଭାବିଲେ ଯେ ଗୁରୁ ଓ ଶିଷ୍ୟ କେଉଁଠାରେ ଲୁଚି ଯାଇଛନ୍ତି?

"ଜୀବଦତ୍ତ! କଣ ଏହି ଦୁଷ୍ଟମାନଙ୍କର ଅଦୃଶ୍ୟ ହେବାପାଇଁ ମଧ୍ୟ ଶକ୍ତି ଥାଏ?" ଖଡ୍ଗବର୍ମା ଆଶ୍ଚର୍ଯ୍ୟ ହୋଇ ପଚାରିଲେ।

"ନାହିଁ, ଯଦି ଏପରି ବଡ଼ ଶକ୍ତି ଥାନ୍ତା, ସେମାନେ ଲୁଚି କରାଯାଇଥିବା ଜୁଆର ବସ୍ତାପାଇଁ ଏହି ମାନ୍ତ୍ରିକ ଓ ଜଟାଧାରୀ ଭୂତ ଏତେ କଷ୍ଟ ଉଠାଇ ନଥାନ୍ତେ। ଏହି ଗୁମ୍ଫାରୁ ବାହାରକୁ ଯିବାପାଇଁ ଗୁପ୍ତମାର୍ଗ ନିଶ୍ଚୟ ଥିବ। ଆମେ ବଡ଼ ସାବଧାନ ହୋଇ ପ୍ରତ୍ୟେକ ପଥର ଭଲଭାବେ ହଲାଇ ଦେଖିବା ଦରକାର।" ଜୀବଦତ୍ତ କହିଲେ।

ଏହାପରେ ଖଡ୍ଗବର୍ମା ଓ ଜୀବଦତ୍ତ ଗୁମ୍ଫାର କାନ୍ଥରେ ଥିବା ପ୍ରତ୍ୟେକ ପଥରକୁ ପୂର୍ଣ୍ଣ ଶକ୍ତି ପ୍ରୟୋଗ କରି ଠେଲିଲେ।

ଅଧଘଣ୍ଟା ପର୍ଯ୍ୟନ୍ତ ଏହିପରି ଚେଷ୍ଟା କରୁ କରୁ ଗୋଟିଏ ଚୃରିକୋଣିଆ ପଥର ହଲିବା ଦେଖାଗଲା। ସେହି ପଥରଟି ତଳୁ ଚୃରି-ପାଞ୍ଚ ଫୁଟ ଉଚ୍ଚରେ ଥିଲା।

ପଥର ଅଳ୍ପ ପଛକୁ ଘୁଞ୍ଚିବା ମାତ୍ରେ ଜୀବଦତ୍ତ ଖଡ୍ଗବର୍ମାକୁ ସତର୍କ କରାଇ କହିଲେ— "ଖଡ୍ଗବର୍ମା, ମାନ୍ତ୍ରିକ ଓ ତା ଅନୁଚର ଭୂତ ଏହି ରାସ୍ତାରେ ଯାଇ ପୁନର୍ବାର ଏହି ପଥରକୁ ଠିକ୍ ଭାବେ ବସାଇଛନ୍ତି। ମୋର ସନ୍ଦେହ ହେଉଛି ଯେ ଏମାନେ ଆମକୁ ଆକ୍ରମଣ କରିବାପାଇଁ ଏହା ପଛରେ ଥିବା ଅନ୍ୟ ଏକ ଗୁମ୍ଫାରେ ଲୁଚିଥିବେ।"

"ତେବେ ତୁମେ କଣ ଭାବୁଛ ଯେ ସେମାନେ ଆମ ପଛେ ପଛେ ଆସି ସେହି ସୁଡ଼ଙ୍ଗରେ ଆମେ ପହଞ୍ଚିବାକ୍ଷଣି ବର୍ଛା କିମ୍ବା ଛୁରୀଦ୍ୱାରା

ଆମକୁ ଆକ୍ରମଣ କରିବେ? ଏହା ନା?" ଖଡ୍ଗବର୍ମା ପଚାରିଲେ ।

"ହଁ, ମୋର ଏହି ସନ୍ଦେହ ହେଉଛି ।" ଜୀବଦତ୍ତ ଉତ୍ତର ଦେଲେ ।

"ତେବେ ତୁମେ ଗୋଟିଏ କାମ କର । ଆମେ ଏକାଥରେ ଦୁଇଟି ପଥରକୁ ଠେଲିଦେବା । ତୁମେ ଗୋଟିଏ ପାଖକୁ ଚାଲିଯାଅ । ଜଳନ୍ତା ଦହୁଡ଼ିଟିଏ ମୁଁ ସେହି ସୁଡ଼ଙ୍ଗକୁ ଫିଙ୍ଗିବା ପରେ ଯଦି ସେମାନେ ଆକ୍ରମଣ ନ କରିବେ, ଆମେ ସେହି ଆଲୋକ ସାହାଯ୍ୟରେ ଦେଖି ପାରିବା ଯେ ସେହି ଗୁମ୍ଫାରେ କଣ କଣ ଅଛି । ତା ପରେ ସତର୍କ ହୋଇ ଆମେ ସେଠାକୁ ଯାଇ ପାରିବା ।" ଖଡ୍ଗବର୍ମା ବୁଝାଇଲେ ।

"ଖଡ୍ଗବର୍ମା, ତୁମେ ଯାହା କହୁଛ ଅତି ବୁଦ୍ଧିମାନ ଉପାୟ ନହେଲେ ମଧ୍ୟ ବର୍ତ୍ତମାନ ପରିସ୍ଥିତିରେ ଆମ ସମ୍ମୁଖରେ ଅନ୍ୟ କୌଣସି ଉପାୟ ନାହିଁ । ଚାଲ, ଏହିପରି କରିବା ।" ଜୀବଦତ୍ତ କହିଲେ !

ଜୀବଦତ୍ତ ମୁହଁରୁ ଏହିକଥା ବାହାରିବାକ୍ଷଣି ଖଡ୍ଗବର୍ମା ଗୁମ୍ଫା ମଝିରେ ଥିବା ଅଗ୍ନିକୁଣ୍ଡ ପାଖକୁ ଯାଇ ଦୁଇଟି ଦହୁଡ଼ି ନେଇ ଜଳାଇଲେ । ପର ମୁହୂର୍ତ୍ତରେ ସେ ସେହି ଦୁଇଟି ଦହୁଡ଼ିକୁ ଉଠାଇଲେ । ତା ପରେ ଉଭୟେ ମିଶି ଚାରିକୋଣିଆ ପଥରଟିକୁ ଠେଲିଲେ । ସେହି ପଥରଟି ପଛକୁ ନପଡ଼ି ପାଖକୁ ଘୁଞ୍ଚିଯିବା ଦେଖି ଜୀବଦତ୍ତ ହଠାତ୍ ତଳେ ବସି ପଡ଼ିଲେ ।




ଖଡ୍ଗବର୍ମା ସେହି ଦୁଇଟି ଦହୁଡ଼ ସୁଡ଼ଙ୍ଗ ଭିତରକୁ ଜୋରରେ ଫିଙ୍ଗିଦେଲେ ।

ସେହିକ୍ଷଣି ଖଡ୍ଗବର୍ମା ତଥା ଜୀବଦତ୍ତ ନିଶ୍ୱାସ ବନ୍ଦକରି ବଡ଼ କୌତୁହଳ ସହ କଣ ହେବ ଜାଣିବାପାଇଁ ସେହି ଦିଗକୁ ଚାହିଁ ରହିଲେ । ଏକ ମିନଟ୍ ପରେ ଖଡ୍ଗବର୍ମା ଠୋ ଠୋ ହସି କହିଲା—"ବନ୍ଧୁବର, ସେହି ଦୁଷ୍ଟମାନେ ଆମକୁ ଠକିଦେଇ ଏଠାରୁ ବହୁତ ଦୂରକୁ ଚାଲି ଯାଇଛନ୍ତି । ମୁଁ ଭାବୁଛି ଯେ ସେମାନେ ଯାଇ ଅନ୍ୟ ଏକ ଗୁମ୍ଫାରେ ଲୁଚି ରହିଛନ୍ତି ।"

"ହୋଇଥାଇ ପାରେ, ଏହା ମଧ୍ୟ ସମ୍ଭବ ଯେ ସେମାନେ ସେହିମାନେ ହତିଆର ନେଇ



ଆମର ଅପେକ୍ଷାରେ ଥିବେ । ଖବରଦାର!" ଜୀବଦତ୍ତ ନିଜ ମିତ୍ର ଖଡ୍‌ଗବର୍ମାଙ୍କୁ ସାବଧାନ କରାଇଲେ ।

"ଆଉ କେତେ ସମୟ ସାବଧାନ ହୋଇ ରହିବା? ସୂର୍ଯ୍ୟୋଦୟ ହେବାକୁ ଯାଉଛି!" ଏହିପରି କହି ଖଡ୍‌ଗବର୍ମା ଜୋରରେ ଖଣ୍ଡା ବାହାର କରି ସୁଡ଼ଙ୍ଗ ଭିତରଟି ଦେଖିଲେ । ଠିକ୍ ସେତେବେଳେ ଜୀବଦତ୍ତ ଗୋଟିଏ ବର୍ଚ୍ଛା ଉଠାଇ ପୂର୍ଣ୍ଣ ଶକ୍ତିସହ ସୁଡ଼ଙ୍ଗ ଭିତରକୁ ଫିଙ୍ଗିଦେଲେ ।

ଖଡ୍‌ଗବର୍ମା ସୁଡ଼ଙ୍ଗକୁ ଯେଉଁ ଦହୁଡ଼ ଫିଙ୍ଗିଥିଲେ ତା ଆଲୋକରେ ଗୋଟିଏ ଛୋଟ ସୁଡ଼ଙ୍ଗ ଦେଖାଗଲା । କିନ୍ତୁ ମନୁଷ୍ୟଙ୍କ ଚିହ୍ନବର୍ଣ୍ଣ ଦେଖାଗଲା ନାହିଁ । ଜୀବଦତ୍ତ ମଧ୍ୟ ସାବଧାନ ହୋଇ କହିଲା—"ଖଡ୍‌ଗବର୍ମା, ବର୍ତ୍ତମାନ ଆମେ ଏହି ସୁଡ଼ଙ୍ଗ ଦେଇ ଦ୍ୱିତୀୟ ସୁଡ଼ଙ୍ଗକୁ ଯିବା । ସେହି ଦୁଷ୍ଟମାନେ ସେପଟେ ଲୁଚିଥାଇ ପାରନ୍ତି । ସେମାନେ ପ୍ରକୃତରେ ଆମକୁ ବହୁତ କଷ୍ଟ ଦେଲେଣି । ଏଣୁ ଏହି କାମ ଶୀଘ୍ର ଶେଷ କରିବାକୁ ହେବ ।" ଏହାପରି କହି ଜୀବଦତ୍ତ ହଠାତ୍ ସୁଡ଼ଙ୍ଗ ଭିତରକୁ ଡେଇଁ ପଡ଼ିଲା । ଖଡ୍‌ଗବର୍ମା ମଧ୍ୟ ତାଙ୍କ ପଛରେ ସୁଡ଼ଙ୍ଗ ଦେଇ ଚାଲିଗଲେ ।

ସେହି ସ୍ଥାନରେ ତାଙ୍କୁ ପଥର-ଗୋଡ଼ି ଛଡ଼ା ଆଉ କିଛି ଦେଖାଗଲା ନାହିଁ । ଖଡ୍‌ଗବର୍ମା ହାତରେ ନିଜ ଖଣ୍ଡାଧରି ସୁଡ଼ଙ୍ଗ ଭିତରେ ଜାଗ୍ରତରେ ଚାଲିଲେ । ଜୀବଦତ୍ତ ମନ୍ତ୍ରଦଣ୍ଡ କାନ୍ଧରେ ମାରି ସବୁଆଡ଼ ଭଲଭାବେ ପରୀକ୍ଷା କରି ଖଡ୍‌ଗବର୍ମାଙ୍କୁ ଅନୁସରଣ କଲେ ।

ସେମାନେ ସୁଡ଼ଙ୍ଗ ଭିତରେ ଦୁଇ-ତିନି ମିନିଟ୍ ଚାଲିବା ପରେ ମୁଖ୍ୟ ଦ୍ୱାରରେ ପହଞ୍ଚିଲେ । ବାହାରେ ଏକ ବିଶାଳ ପଡ଼ିଆ ଦେଖାଗଲା । ସେଠାରେ ସେମାନଙ୍କୁ ଶିଥିଳ-ବସ୍ଥାରେ ଥିବା ଅନେକ ଛୋଟ-ବଡ଼ ଘର ଓ ଏକ ଦୁର୍ଗର ଭଗ୍ନାବଶେଷ ମଧ୍ୟ ଦେଖାଗଲା ।

ଜୀବଦତ୍ତ ସେହି ଘର ଗୁଡ଼ିକୁ ଦେଖିବା ମାତ୍ରେ ଆନନ୍ଦିତ ହୋଇ କହିଲେ—"ଖଡ୍‌ଗବର୍ମା, ସୂର୍ଯ୍ୟୋଦୟ ସମୟ ନିକଟ ହେଲାଣି । ଆନନ୍ଦର କଥା ଆମେ ଏବେ

ଗୁମ୍ଫାରେ ଥିବା ସୁଡ଼ଙ୍ଗ ଦେଇ ଶିଥିଳନଗରରେ ଆସି ପହଞ୍ଚିଗଲେ ।

"କଣ ଏ ଶିଥିଳନଗର? ଏଠାରେ କଣ ଅଛି? କଣ ଅଳ୍ପ କେତେକ ଭଙ୍ଗା ଘର ଆମକୁ ଦେଖା ଯାଉଛି!" ଖଡ୍ଗବର୍ମା ପଚାରିଲେ ।

"ଏକ ସମୟରେ ଏହି ଘର ଗୁଡ଼ିକ ହୁଏତ ନଗରର ମୁଖ୍ୟ ଘର ହୋଇ ଥାଇପାରେ । ମାନ୍ତ୍ରିକ ଓ ଜଟାଧାରୀ ଭୂତ ଏହି ଦୁର୍ଗରେ ମୂଷାପରି ଏଠାରେ ଲୁଚି ରହିଛନ୍ତି । ସେମାନଙ୍କୁ ଧରିବାକୁ ହେବ । ସେମାନଙ୍କୁ କିପରି ଆମେ ବାହାରକୁ ଡାକି ପାରିବା?" ଜୀବଦତ୍ତ ପଚାରିଲେ ।



ଜୀବଦତ୍ତ ଭାବିବା ପ୍ରକାରେ ମାନ୍ତ୍ରିକ ଓ ଜଟାଧାରୀ ଭୂତ ସେହି ଶିଥିଳନଗରରେ ଲୁଚିରହି ନଥିଲେ । ସେ ବରହେଁ ସେଠାରେ ଥିବା ଗୋଟିଏ ମହଲର ଏକ ବିଶାଳ ମଣ୍ଡପସ୍ଥ ଉଚ୍ଚ ଆସନରେ ବସିଥିବା ଏକ ପୂଜାରିଣୀ ସମ୍ମୁଖରେ ବସିଥିଲେ । ପୂଜାରିଣୀର ଉଭୟ ପାଖରେ ଦୁଇଜଣ ଭୟଙ୍କର ଆକୃତିବାଲା ବ୍ୟକ୍ତି ଖଣ୍ଡାଧରି ଠିଆ ହୋଇଥିଲେ ।

ପୂଜାରିଣୀ ଆଖି ଲାଲକରି ଓ ଦାନ୍ତ କାମୁଡ଼ି କହିଲା—"ଆରେ ମାନ୍ତ୍ରିକ ଓ ଜଟାଧାରୀ ଭୂତ! ଠିଆ ହୋଇଯାଅ । ତୁମମାନଙ୍କ ମୂର୍ଖତା ଯୋଗୁଁ ଏହି ପବିତ୍ର ନଗରର ରହସ୍ୟ ମନୁଷ୍ୟମାନଙ୍କୁ ଜଣା ପଡ଼ିଲା ।"

"ମହାଶକ୍ତି! ଆପଣଙ୍କ ଆଜ୍ଞାହେଲେ ଏହିକ୍ଷଣି ସେ ଦୁଇଜଣଙ୍କୁ ବନ୍ଦୀକରି ଜଟାଧାରୀ ଭୂତର ଖାଦ୍ୟ କରିଦେବ ।" ମାନ୍ତ୍ରିକ ଥରି ଥରି ଉତ୍ତର ଦେଲା ।

ପୂଜାରିଣୀ ଅଟ୍ଟହାସ କରି ନିଜ ହାତରେ ଥିବା ଶୂଳକୁ ଝାଡ଼ି କହିଲା—"ତୋର ଜଟାଧାରୀ ଭୂତ ଏଡ଼େ ମୂର୍ଖ ଯେ ତାକୁ ଖାଇବାକୁ ଦେଲେ ମଧ୍ୟ ଖାଇ ପାରୁନାହିଁ । ଏହି ଭୂତର ଦୟାରୁ ସେ ଦୁଇଜଣ ମନୁଷ୍ୟ ମଧ୍ୟ ଏଠାକୁ ଆସିଗଲେ । ସେମାନେ କିଏ? କେଉଁଠାରୁ ଆସିଛନ୍ତି? ଏ ସବୁ ବିଷୟ ନଜାଣି ମହା ଭୂତପାଇଁ ସେମାନଙ୍କୁ ବଳିଦେବା ନିରାପଦ ନୁହେଁ, ବୁଝିଲ!"

"ହଁ, ହଁ, ମହାଶକ୍ତି! ଆମକୁ ଜଣା ପଡ଼ିଗଲା ।" ସେଠାକାର ସେବକମାନେ ମୃଦୁ କଣ୍ଠରେ କହିଲେ ।

ପୂଜାରଣୀ ଥରେ ସମସ୍ତଙ୍କୁ ତୀକ୍ଷ୍ଣ ଦୃଷ୍ଟିରେ ଦେଖି କହିଲା—"ଆରେ ମୂର୍ଖ, ମୋ କଥା ଧ୍ୟାନ ଦେଇ ଶୁଣ । ସେହି ଦୁଇଜଣ ମନୁଷ୍ୟଙ୍କୁ ମୋ ପାଖକୁ ଏପରି ବନ୍ଦୀକରି ଆଣିବ ଯାହାଦ୍ୱାରା ସେମାନଙ୍କର କୌଣସି ଅସୁବିଧା କିମ୍ବା କଷ୍ଟ ନହେବ! ସୂର୍ଯ୍ୟୋଦୟ ହେବାକୁ ଯାଉଛି । ସେମାନେ ଆମର ଏହି ଘରଟିକୁ ଖୋଜି-ଖୋଜି ନିଶ୍ଚୟ ଆସୁଥିବେ! ତୁମମାନଙ୍କ ମଧ୍ୟରୁ କେତେଜଣ ଗୁପ୍ତ ବେଶରେ ସେମାନଙ୍କୁ ଅନୁସରଣ କରି ସେମାନେ କି କି କଥା ହେଉଛନ୍ତି ଶୁଣିନିଅ! ଠିକ୍ ଦୁଇପହର ସମୟରେ ତାଙ୍କୁ ମୋ ପାଖକୁ ନେଇଆସ । ସେତେବେଳେ ଶୁଭ ମୁହୂର୍ତ୍ତ । ଏ ଭିତରେ ସେମାନଙ୍କୁ ଦେଖିବାକୁ ଭଲଭାବେ ସୁଯୋଗ ଦିଅ ।"

"ଠିକ୍ ଅଛି, ମହାଶକ୍ତି!" ଏହାପରି କହି ଗୃହଜଣ ସେବକ, ମାନ୍ତ୍ରିକ ତଥା ଜଟାଧାରୀ ଭୂତ ପୂଜାରଣୀକୁ ପ୍ରଣାମ କରି ମନ୍ଦିରରୁ ବାହାରକୁ ଆସିଲେ ।

"ଗୁରୁଦେବ! ପଚ୍ଛପଟୁ ଯାଇ ମୁଁ ସେହି ଦୁଇଜଣଙ୍କୁ ଆକ୍ରମଣ କରି ତାଙ୍କୁ ଖାଇଦେବ । ସେମାନଙ୍କ ଯୋଗୁଁ ମହାଶକ୍ତି ପୂଜାରଣୀ ଠାରୁ ମତେ ଭର୍ତ୍ସନା ଶୁଣିବାକୁ ପଡ଼ିଲା ।" ଜଟାଧାରୀ ଭୂତ କହିଲା ।

"ଆରେ, ତୋ ଠାରୁ ମତେ ଅଧିକ ଅପମାନ ମିଳିଛି ।" ଏହାପରି କହି ମାନ୍ତ୍ରିକ ଗୋଟିଏ ଛୁରୀ ହାତ ମୁଠାରେ ଜୋରରେ ଧରି କହିଲା— "ଦେଖ, ସେ ଦିହେଁ ସୁଡ଼ଙ୍ଗ ଦ୍ୱାର ପାଖରେ ବସିଛନ୍ତି । ଆମେ ସେମାନଙ୍କୁ ମାରି ବଣକୁ ଧାଇଁ ପଳାଇବା! ଚାଲ ।"

ଏହାପରେ ଚଢାବାଢପରି ମୁଣ୍ଡ ହଲାଇ ହଲାଇ ଖଡ୍ଗବର୍ମା ଓ ଜୀବଦତ୍ତଙ୍କ ପାଖକୁ ସେମାନେ ଗଲେ । (ଅସମାପ୍ତ)






# ଯଶ-ସାଧନା

ବିକ୍ରମାଦିତ୍ୟ ଗଛ ଉପରୁ ଶବ ଆଣି କାନ୍ଧରେ ପକାଇ ପୂର୍ବପରି ଶ୍ମଶାନ ଅଭିମୁଖେ ତୁନିହୋଇ ଚାଲିଲେ । ଯିବା ସମୟରେ ଶବସ୍ଥିତ ବେତାଳ କହିଲା—“ମହାରଜା, ତୁମେ କଣ ସାଧନ କରିବା ସକାଶେ ଏତେ କଷ୍ଟ ଉଠାଉଛ ? ମାତ୍ର ମନେରଖ ଯେ ଗୁଣକୀର୍ତ୍ତି ପରି ତୁମେ ମଧ୍ୟ ଠିକ୍ ଥିବା ବସ୍ତୁକୁ ନିଜ ହାତରେ ଯେପରି ଧ୍ୱଂସ ନକର । ତୁମ ପରିଶ୍ରମକୁ ଭୁଲାଇବାପାଇଁ ଗୁଣକୀର୍ତ୍ତିର କାହାଣୀ ଶୁଣାଉଛି, ଶୁଣ ।”

ବେତାଳ ଏପରି କହିଲା : ପ୍ରାଚୀନ ଯୁଗରେ ଶୋଣାବତୀ ନଦୀ କୂଳରେ ସଦାନନ୍ଦ ନାମକ ଜଣେ ବୀଣାବଜାଇବା ଲୋକ ବାସ କରୁଥିଲେ । ଲୋକେ ତାଙ୍କୁ ସରସ୍ୱତୀ ତଥା ଅଭିନବ ନାରଦ କହୁଥିଲେ । ଅନେକ ରଜା ତାଙ୍କୁ ରାଜସଭାକୁ ନିମନ୍ତ୍ରଣ କରୁଥିଲେ, କିନ୍ତୁ ସଦାନନ୍ଦ ମନରେ

## ବେତାଳ କଥା

ଧନ ତଥା ଯଶ ଲାଳସା ନଥିଲା । ଏଣୁ ତାଙ୍କ ଜୀବନର ଲକ୍ଷ୍ୟ ଥିଲା ଯେ ଅଧିକରୁ ଅଧିକ ଶିଷ୍ୟଙ୍କୁ ନିଜ ବିଦ୍ୟାଦାନ କରିବା । ଅତଏବ ହଜାର ହଜାର ଶିଷ୍ୟ ତାଙ୍କ ପାଖରୁ ବିଦ୍ୟା ପ୍ରାପ୍ତ କରି ଯଶ ପ୍ରାପ୍ତ କଲେ ।

ଧୀରେ ଧୀରେ ସଦାନନ୍ଦ ବୁଢ଼ା ହୋଇଗଲେ । ଏଣିକି ଯେଉଁମାନେ ତାଙ୍କଠାରୁ ବିଦ୍ୟା ପ୍ରାପ୍ତ କରିବାକୁ ଆସିଲେ ସେମାନଙ୍କୁ ତାଙ୍କର ପୁରାତନ ଶିଷ୍ୟଙ୍କ ପାଖକୁ ପଠାଇ-ଦେଲେ । ସେତେବେଳେ ସଦାନନ୍ଦ ପାଖକୁ ଗୁଣକୀର୍ତ୍ତି ନାମକ ଜଣେ ଯୁବକ ଆସି ବୀଣା ବଜାଇବା ଶିଖିବାପାଇଁ ପ୍ରାର୍ଥନା କଲା ।

"ବାପ, ମୁଁ ଏବେ ବୁଢ଼ା ହୋଇ ଯାଇଛି । ମୋର ଅନେକ ଶିଷ୍ୟ ଅଛନ୍ତି । ତୁ ଯେ କୌଣସି ଶିଷ୍ୟ ପାଖକୁ ଯାଇ ବିଦ୍ୟା ଶିଖ ।" ସଦାନନ୍ଦ ଗୁଣକୀର୍ତ୍ତିଙ୍କୁ ବୁଝାଇଲେ ।

"ହେ, ମହାନୁଭବ! ଆପଣଙ୍କ କୌଣସି ଶିଷ୍ୟ ଏହି ବିଦ୍ୟା ପୂର୍ଣ୍ଣଭାବେ ଜାଣିନାହିଁ । ମୁଁ ପୂର୍ଣ୍ଣ ବିଦ୍ୟା ପ୍ରାପ୍ତ କରିବା ଲକ୍ଷ୍ୟରେ ଆସିଛି । ଯଦି ଆପଣ ଶିଖାଇବେ ମୁଁ ବୀଣା ବଜାଇବା ଶିଖିବି । ମୋର ଦୃଢ଼ ବିଶ୍ୱାସ ଯେ ମୁଁ ଆପଣଙ୍କ ଯଶ ବୃଦ୍ଧି କରିବି ।" ଗୁଣକୀର୍ତ୍ତି ନିବେଦନ କଲା ।

"ବାପ, ତୁମର ଉତ୍ସାହ ପ୍ରଶଂସନୀୟ, କିନ୍ତୁ ବୋଧହୁଏ ତୁମକୁ ପୂର୍ଣ୍ଣ ବିଦ୍ୟା ଶିଖାଇବା ପର୍ଯ୍ୟନ୍ତ ବଞ୍ଚିରହି ପାରିବି ନାହିଁ । ତଥାପି ତୁମେ ବହୁତ ଦୂରରୁ ମୋ ପାଖକୁ ଆସିଛ । ଏଣୁ ମୁଁ ଅବଶ୍ୟ ବୀଣା ବଜାଇବା ଶିଖାଇବି ।



ଏହାପରେ ସେ ଗୁଣକୀର୍ତ୍ତିଙ୍କୁ ନିଜ ଶିଷ୍ୟ ରୂପେ ଗ୍ରହଣ କଲେ ।

ଗୁଣକୀର୍ତ୍ତି ଧୀରେ ଧୀରେ ପୂର୍ଣ୍ଣଭାବେ ବୀଣା ବଜାଇବା ଶିଖିଲା ।

କିନ୍ତୁ ସଦାନନ୍ଦ ଯାହା ଭାବିଥିଲେ, ତାହା ହେଲା । ଗୁଣକୀର୍ତ୍ତି ଅଧା ବିଦ୍ୟା ଶିଖିଥିବା ସମୟରେ ସଦାନନ୍ଦ ରୋଗାକ୍ରାନ୍ତ ହେଲେ । ଦିନେ ସେ ଗୁଣକୀର୍ତ୍ତିଙ୍କୁ ଡାକି କହିଲେ— "ବାପ, ମୋର ଶେଷ ସମୟ ଆସିଗଲା । ତୁମର ବିଦ୍ୟା ପୂର୍ଣ୍ଣ କରିବା ଶକ୍ତି ମୋର ନାହିଁ । ଯଦି ତୁମେ ଚାରି-ପାଞ୍ଚ ବର୍ଷ ପୂର୍ବରୁ ଆସିଥାନ୍ତ, ତୁମକୁ ମୁଁ ମୋ ଠାରୁ ମଧ୍ୟ ବଡ଼ ବୀଣା ବାଦକ କରିଦେଇ ପାରିଥାନ୍ତି, କିନ୍ତୁ ଏ ଯଶ ଆମ ଦୁଇଜଣଙ୍କ ଭାଗ୍ୟରେ ନାହିଁ । ଆମ ବଂଶରେ ବହୁତ ଦିନରୁ ଗୋଟିଏ ବିଚିତ୍ର ବୀଣା ଅଛି । ସେଥିରେ ପ୍ରତ୍ୟେକ ସ୍ୱର ନିର୍ଦ୍ଦିଷ୍ଟ ସ୍ଥାନରେ ଧ୍ୱନିତ ହେଉଛି । ଯେ କୌଣସି ବୀଣା-ବାଦକ ବଜାଇଲେ ମଧ୍ୟ ଶ୍ରୋତାଙ୍କୁ ଅଦ୍ଭୁତ ସ୍ୱର ସେଥିରୁ ଶୁଣିବାକୁ ମିଳେ । ମୁଁ ଏହି ବୀଣା ତୁମକୁ ଦେବି । ଏହା ସାହାଯ୍ୟରେ ତୁମେ ରଜାମାନଙ୍କୁ ଆନନ୍ଦ ଦେଇ ପାରିବ । ଏହା ବ୍ୟତୀତ ତୁମେ ଶ୍ରୋତାଙ୍କୁ ମଧ୍ୟ ଭ୍ରମରେ ପକାଇ ଏକ ଯଶସ୍ୱୀ ବୀଣା-ବାଦକ ହୋଇ ପାରିବ ।" ଏହିପରି ବୁଝାଇ ସଦାନନ୍ଦ ସେହି ଅପୂର୍ବ ବୀଣାଟି ଗୁଣକୀର୍ତ୍ତି ହାତରେ ଦେଇ ପ୍ରାଣତ୍ୟାଗ କଲେ ।

ଗୁଣକୀର୍ତ୍ତି ଭକ୍ତିପୂର୍ବକ ନିଜ ଗୁରୁଙ୍କ ଅନ୍ତ୍ୟେଷ୍ଟି କ୍ରିୟା ଶେଷକରି ସ୍ୱୟଂ ସେହି ବୀଣାଟିକୁ





ନେଇ ରଜାଙ୍କ ସଭାକୁ ଗଲା ଓ ରଜାଙ୍କୁ ନିବେଦନ କଲା—"ମହାରଜା, ଆପଣ ମତେ ରାଜସଭାରେ ବୀଣା-ବାଦକ ରୂପେ ରଖନ୍ତୁ ।"

ରଜା ଗୁଣକୀର୍ତ୍ତିଙ୍କୁ ବୀଣା-ବାଦନ କରିବାପାଇଁ ଅନୁମତି ଦେଲେ । ଗୁଣକୀର୍ତ୍ତି ନିଜ ପୂର୍ବ ପରିଚିତ ସଙ୍ଗୀତକୁ ସେହି ବିଚିତ୍ର ବୀଣାରେ ଶୁଣାଇଲା । ସଙ୍ଗୀତ ଶୁଣି ସଭାସଦଗଣ ମୁଗ୍ଧ ହୋଇଗଲେ । ସେମାନେ ଏପରି ବୀଣା-ବାଦନ କେବେ ଶୁଣି ନଥିଲେ । ରଜା ତାକୁ ରାଜ-ସଭାରେ ବୀଣା-ବାଦକ ରୂପେ ନିଯୁକ୍ତ କରି ତାକୁ ସମ୍ମାନ ଦେଲେ । ଫଳରେ ତା ଯଶ ଚତୁର୍ଦ୍ଦିଗରେ ବିସ୍ତାରିତ ହେଲା । ଅନେକ ପ୍ରସିଦ୍ଧ ବୀଣା-ବାଦକ ତା ବୀଣା-ବାଦନ ଶୁଣି କହିଲେ ଯେ ଗନ୍ଧର୍ବ ଅଂଶ ଛଡ଼ା ଅନ୍ୟ ଦ୍ୱାରା ଏପରି ବାଦନ ଅସମ୍ଭବ ।

ଅନେକ ଦେଶରୁ ଯୁବକ ଆସି ଗୁଣକୀର୍ତ୍ତିର ଶିଷ୍ୟ ହେବାପାଇଁ ଇଚ୍ଛା କଲେ । ଗୁଣକୀର୍ତ୍ତି ସେମାନଙ୍କୁ ମନା କରିବାପାଇଁ ନାନା ପ୍ରକାର ଛଳନା ଦେଖାଇଲା ।

ଲୋକଙ୍କ ଆଗରେ ଗୁଣକୀର୍ତ୍ତି ଏକ ମହାନ ପ୍ରତିଭାଶାଳୀ, ଯଶସ୍ୱୀ ଓ ଧନୀବ୍ୟକ୍ତି ହୋଇଥିଲେ ମଧ୍ୟ ଏକାନ୍ତରେ ରହିବା ସମୟରେ ସେ ମାନସିକ ଅଶାନ୍ତିରେ ସମୟ କାଟୁଥିଲା ।

ଦିନେ ରଜା ଗୁଣକୀର୍ତ୍ତିଙ୍କୁ ଡକାଇ କହିଲେ—"ତୁମକୁ ମୋ କନ୍ୟା କଳାବତୀକୁ ବୀଣା-ବାଦନ ଶିଖାଇବାକୁ ହେବ । ସେ ତୁମକୁ ଭର୍ତ୍ତା-ପତି ରୂପେ ମଧ୍ୟ ସ୍ୱୀକାର କରିଛି ।"

ସେହିକଥା ଶୁଣି ତାର ମାନସିକ ଅଶାନ୍ତି ଦୁଇଗୁଣ ବଢ଼ିଗଲା । ଶେଷରେ ଗୋଟିଏ ଦିନ ରାତିରେ ନିଜର ବିଚିତ୍ର ବୀଣା ନେଇ ଗୁପ୍ତରେ ଏକ ନଦୀ କୂଳରେ ପହଞ୍ଚି ସେହିଟିକୁ ପଥରରେ ପିଟି ପିଟି ଖଣ୍ଡ ଖଣ୍ଡ କରିଦେଲା । ଏହାପରେ ସେ ସିଧା ତା ଗୁରୁଙ୍କ ଆଶ୍ରମକୁ ଚାଲିଯାଇ ଅଳ୍ପଦିନ ସେଠାରେ ରହି ନିଜର ପୂର୍ବ ବୀଣା ନେଇ ଅକ୍ଲାନ୍ତ ପରିଶ୍ରମ କଲା । ଗୁରୁଙ୍କ ଅଭାବରେ ମଧ୍ୟ ତା ସାଧନା ସଫଳ ହୋଇଗଲା ।

କେତେଦିନ ପରେ ସେ ଜାଣିପାରିଲା ଯେ ତା ସାଧନା ସଫଳ ହୋଇଛି । ତା ପରେ

ରାଜସଭାକୁ ଆସି ସାଧାରଣ ବୀଣା ଦ୍ୱାରା ସଙ୍ଗୀତ ଶୁଣାଇଲା ।

ଏଣିକି ସେ କଳାବତୀ ତଥା ଅନ୍ୟାନ୍ୟ ଶିଷ୍ୟମାନଙ୍କୁ ବୀଣା-ବାଦନ ଶିକ୍ଷାଦେଇ ଏକ ଗୁରୁକୁଳ ସଞ୍ଚାଳନ କଲା । କାଳକ୍ରମେ ରଜା ମଧ୍ୟ ନିଜ କନ୍ୟାକୁ ତା ସଙ୍ଗେ ବିବାହ କରାଇଲେ ।

ବେତାଳ ଏହି କାହାଣୀ ଶୁଣାଇ ପଚାରିଲା— "ମହାରଜା, ଗୁଣକୀର୍ତ୍ତି ନିଶ୍ଚୟ ପାଗଳ । କଣ ବିଚିତ୍ର ବୀଣାଟିକୁ ଧ୍ୱଂସ କରିବା ତାର ପାଗଳପଣ ନୁହେଁ ? ଯଦି ସେ ପୂର୍ଣ୍ଣ ପାଣ୍ଡିତ୍ୟ ପ୍ରାପ୍ତ କରି ନ ଥାନ୍ତା ସେ ଅସୁବିଧାରେ ପଡ଼ି ନଥାନ୍ତା କି ? ଗୁଣକୀର୍ତ୍ତି କାହିଁକି ଏପରି କଲା ? ତୁମେ ଜାଣିଶୁଣି ଉତ୍ତର ନଦେବ ଯଦି ତୁମର ମୁଣ୍ଡ ଖଣ୍ଡ ଖଣ୍ଡ ହୋଇଯିବ ।" ଏହାଶୁଣି ବିକ୍ରମାଦିତ୍ୟ ଏପରି କହିଲେ— "ଗୁଣକୀର୍ତ୍ତି ପାଗଳ ନୁହେଁ । ସେ ଏକ ନିଶ୍ଚିତ ଲକ୍ଷ୍ୟ ରଖି କାମ କରୁଥିଲା । ତାର ସଦାନନ୍ଦ ପରି ବିଦ୍ୱାନ ହେବା ଲକ୍ଷ୍ୟ ଥିଲା । ସଦାନନ୍ଦ ଅସମୟରେ ମରିଯିବାରୁ ତା ଲକ୍ଷ୍ୟ ପୂର୍ଣ୍ଣ ହୋଇପାରି ନଥିଲା । ସେ ପାଣ୍ଡିତ୍ୟ ଲାଭ କରିବାପାଇଁ ଚେଷ୍ଟା କରୁ କରୁ ତାକୁ ବିଚିତ୍ର ବୀଣା ମିଳିଲା । ପ୍ରତିଭାଶାଳୀ ବ୍ୟକ୍ତି ସାଧନକୁ ଅଧିକ ମହତ୍ତ୍ୱ ଦେଇ ନଥାଏ, ପ୍ରତିଭାକୁ ମହତ୍ତ୍ୱ ଦେଇଥାଏ । ମାତ୍ର ସାଧନ ପ୍ରାପ୍ତ ହେବା ଫଳରେ ତାହା ତାର ଅଶାନ୍ତିର କାରଣ ହେଲା । ନିଜ ଲକ୍ଷ୍ୟ ପୂର୍ଣ୍ଣ କରିବାପାଇଁ ସେହି ବିଚିତ୍ର ବୀଣା ଖଣ୍ଡ ଖଣ୍ଡ କରିବା ତା ପକ୍ଷେ ଅନିବାର୍ଯ୍ୟ ଥିଲା । ତାଠାରେ ଆତ୍ମବିଶ୍ୱାସର କମ୍ ନଥିଲା । ଏଣୁ ସେ ଏକଲବ୍ୟଙ୍କ ପରି ନିଜ ଗୁରୁଙ୍କୁ ଧ୍ୟାନ କରି ନିଜ ପାଣ୍ଡିତ୍ୟ ପୂର୍ଣ୍ଣ କଲା । ଯଦି ତାହା ପୂର୍ଣ୍ଣ ହୋଇ ନଥାନ୍ତା ଗୁଣକୀର୍ତ୍ତି ବୋଧହୁଏ ସେଥିପାଇଁ ଦୁଃଖ କରି ନଥାନ୍ତା ।"

ରଜାଙ୍କ ଏହିପରି ମୌନଭଙ୍ଗ ହେବାମାତ୍ରେ ବେତାଳ ଶବସହ ଉଭେଇ ଯାଇ ପୁନର୍ବାର ଗଛ ଶାଖାରେ ବସିଲା । (କଳ୍ପିତ)



# ଛିଙ୍କ

ମୂଢ଼ମତି ଜଣେ କାଠକଟାଳିର ପୁଅଥିଲା । ତା ବାପା ମରିବା ପରେ ସେ ନିଜ ଗଧକୁ ସାଙ୍ଗରେ ନେଇ ବଣକୁ ଗଲା ଓ ଗୋଟିଏ ଗଛରେ ଚଢ଼ି ସେହି ଡ଼ାଳଟିକୁ କାଟିଲା ଯେଉଁଟିରେ ସେ ବସିଥିଲା ।

ଜଣେ ପଥିକ ତାକୁ ଦେଖି ବୁଝାଇଲା—"ତୁମେ ସେହି ଡ଼ାଳଟିକୁ କାଟନାହିଁ, ତଳେ ପଡ଼ିଯିବ ।" ତା କଥା ନଶୁଣି କାଟିବାରୁ ସେ ତଳେ କଚାଡ଼ି ହୋଇ ପଡ଼ିଲା । ମୂଢ଼ମତି ପଥିକକୁ ସର୍ବଜ୍ଞ ଭାବି ଧାଇଁଯାଇ ପଚାରିଲା—"ଜ୍ୟୋତିଷୀ ମହାଶୟ, କହନ୍ତୁ, ମୁଁ କେବେ ମରିବି ?"

ସେ ବୁଝିଗଲା ଯେ ଏ ନିଶ୍ଚୟ ମୂର୍ଖ । ଏଣୁ ସେ ଏପରି କହି ନିଜ ରାସ୍ତାରେ ଚାଲିଗଲା—"ଯେବେ ତୁମ ଗଧ ତିନିଥର ଛିଙ୍କିବ, ତୁମେ ମରିଯିବ ।"

ମୂଢ଼ମତି ଗଧକୁ ଧରି ଘରକୁ ଫେରୁଥିବା ସମୟରେ ଗୋଟିଏ ସ୍ଥାନରେ ଥିବା କୁଣ୍ଡରେ ନିଆଁ ଜଳୁଥିଲା । ସେଥିର ଧୂଆଁ ନାକରେ ପଶିବାରେ ଗଧଟି ଛିଙ୍କିଦେଲା । ମୂଢ଼ମତି ଡରିଯାଇ ନିଜ ପଗଡ଼ି ବାହାର କରି ଗଧର ନାକରେ ବାନ୍ଧିଦେଲା । ନିଶ୍ୱାସ ନଯିବା ଫଳରେ ଗଧଟି ପୁନର୍ବାର ଛିଙ୍କିଲା । ମୂଢ଼ମତି ଏହିଥର ଡରିଯାଇ ତା ନାକରେ ଛୋଟ-ଛୋଟ ଗୋଡ଼ି ପୁରାଇ ଦେବାରୁ ଗଧଟି ଜୋରରେ ଆଉଥରେ ଛିଙ୍କିଦେଲା । ମୂଢ଼ମତି ଭୟରେ ମୂର୍ଚ୍ଛା ହୋଇଗଲା । ରାସ୍ତାରେ ଯାଉଥିବା ଲୋକେ ତା ମୁହଁରେ ପାଣି ଛିଞ୍ଚିଲେ । ସେ ଚେତାହୋଇ ଆଖିଖୋଲି ପଚାରିଲା—"ଏ କଣ ସ୍ୱର୍ଗ ନା ନରକ ?" ସେ ଏପରି କହିବା ଶୁଣି ସମସ୍ତେ ହସି ଉଠିଲେ ।






# ଚାଲାକି

ଗୋଟିଏ ଗାଁରେ ଶମ୍ଭୁ ଦାସ ନାମକ ଜଣେ ବ୍ୟକ୍ତି ମିଥ୍ୟା ସାକ୍ଷୀ ଦେଇ ଦିନ କାଟୁଥିଲା । ଯଦି ମିଥ୍ୟା ସାକ୍ଷୀ ହେବାପାଇଁ ସୁଯୋଗ ନପାଏ, ସେ ଗ୍ରାମବାସୀଙ୍କ ମଧ୍ୟରେ ଗଣ୍ଡଗୋଳ ସୃଷ୍ଟି କରାଇ ଯାହାଠାରୁ ଅଧିକ ଧନ ପାଉଥିଲା ତା ସପକ୍ଷରେ ସାକ୍ଷୀ ହେଉଥିଲା ।

କିଛିଦିନ ପରେ ଶମ୍ଭୁ ଦାସର ଗୁମର ଗାଁ ଲୋକଙ୍କୁ ଜଣା ପଡ଼ିଗଲା । ଏଣୁ ଗାଁ ଲୋକେ ତାକୁ ସାକ୍ଷୀ ରୂପେ ନେବା ବନ୍ଦ କରିଦେଲେ । ଫଳରେ ଶମ୍ଭୁ ଦାସ ଦୂର ଗାଁ ମାନଙ୍କୁ ଯାଇ ନିଜ ଧନ୍ଦା ଚଳାଇବାପାଇଁ ବାହାରିଲା ।

ରାସ୍ତାରେ ତାକୁ ଜଣେ ବଣିଆ ମୁଣ୍ଡରେ ଘିଅଟିଣ ନେଇ ଯାଉଥିବା ଦେଖାଗଲା । ସେହି ସମୟରେ ସମ୍ଭୁ ଦାସ ପଛରେ ଜଣେ ମୂଲିଆ ଆସୁଥିବାର ଦେଖି ଶମ୍ଭୁ ଦାସ ମନରେ ବିଚାର କଲା ଓ ମୂଲିଆଟି ତା ପାଖକୁ ଆସିବା ମାତ୍ରେ ସେ କହିଲା—"ଶୁଣ, ମୁଁ ତତେ ଗୋଟିଏ କାମ ବତାଇବି, କରିବୁ ?"

"ଲାଭ ହେବ ଯଦି ନିଶ୍ଚୟ କରିବି ।" ମୂଲିଆଟି ଉତ୍ତର ଦେଲା ।

"ମୁଣ୍ଡରେ ଘିଅଧରି ଯାଉଥିବା ବଣିଆକୁ ଦେଖୁଛୁ ? ତୁ ଘିଅ ଟିଣଟି ତୋର କହି ତା ଠାରୁ ଛଡ଼ାଇ ଆଣ । ଯଦି ଆପତ୍ତି ଉଠାଇବ, ମୁଁ ତୋ ପାଇଁ ସାକ୍ଷୀ ହେବି । ଏହି ମିଛ ସାକ୍ଷୀପାଇଁ ତୁ ମତେ ଦୁଇଟଙ୍କା ଦେବୁ । ତତେ ଏକ ଘିଅଟିଣ ମିଳିବ, ବୁଝିଲୁ ।" ଶମ୍ଭୁ ଦାସ ମୂଲିଆକୁ କହିଲା ।

ଏହି ଉପାୟ ମୂଲିଆର ମନକୁ ଆସିଲା । ସେ ଧାଇଁଯାଇ ବଣିଆ ମୁଣ୍ଡରୁ ଘିଅ ଟିଣଟି ଛଡ଼ାଇ କହିଲା—"ଏହି ଘିଅ ଟିଣଟି ମୋର ।"

"ଆରେ, ଏ କି ଅନ୍ୟାୟ କଥା । ମୁଁ ପାଖ ଗାଁକୁ ଯାଇ ତୋ ବିରୁଦ୍ଧରେ ଆପତ୍ତି ଉଠାଇବି ।" ବଣିଆ ମୂଲିଆକୁ କହିଲା ।

"ଚାଲ, ମୁଁ ମଧ୍ୟ ଯାଉଛି । ଗାଁ କଚେରିରେ ମୁଁ ଏହା ପ୍ରମାଣିତ କରିଦେବି ଯେ ଏହି ଘିଅଟିଣଟି ମୋର ।" ମୂଳିଆ କହିଲା ।

ଦୁହେଁ ମିଶିକରି ପାଖ ଗାଁର ମୁଖିଆଙ୍କ ପାଖରେ ପହଞ୍ଚିଲେ । ସେମାନଙ୍କ ପଛରେ ଶମ୍ଭୁ ଦାସ ମଧ୍ୟ ଗଲା ।

ଉଭୟଙ୍କ କଥାଶୁଣି ମୁଖିଆ କହିଲେ— "ତୁମ ଦୁଇଜଣଙ୍କ ମଧ୍ୟରୁ କିଏ ସତ କହୁଛ, ମୁଁ ବୁଝି ପାରୁନାହିଁ ।"

ଏହାଶୁଣି ମୂଳିଆଟି କହିଲା— "ସରକାର, ମୋର ପୁଅ-ଝିଅ ଥାଉ ଥାଉ, ମୁଁ କଣ ମିଛ କହିବି? ଆଗ ଗାଁରେ ଥିବା ନିଜ ଝିଅ ଘରକୁ ଏହି ଘିଅ ଟିଣଟି ନେବା ସମୟରେ ଏହି ବଣିଆ ରାସ୍ତାରେ ମୋ ଠାରୁ ଛଡ଼ାଇଲା । ଏଣୁ ଏହି ବଣିଆକୁ ଆପଣଙ୍କ ପାଖକୁ ନେଇ ଆସିଛି ।"

"ତୁ ଯାହା କହୁଛୁ, ଏହାର ପ୍ରମାଣ ସ୍ୱରୂପ କଣ ତୋର କେହି ସାକ୍ଷୀ ଅଛି ?" ମୁଖିଆ ମୂଳିଆକୁ ପଚାରିଲେ ।

"ହଁ ଆଜ୍ଞା, ଜଣେ ପଥିକ ସେହି ରାସ୍ତାରେ ଯାଉଥିଲା, ଘଡ଼ିଏ ଅପେକ୍ଷା କରନ୍ତୁ ।" ଏହା କହି ମୂଳିଆଟି ପଦାକୁ ଆସି ଶମ୍ଭୁ ଦାସକୁ ଭିତରକୁ ଡ଼ାକିନେଲା ।

ମୁଖିଆ ଶମ୍ଭୁ ଦାସକୁ ପଚାରିଲେ— "କଣ ତୁମେ ଏହି ଦୁଇଜଣକୁ ଜାଣିଛ ?"

"ଆଜ୍ଞା! ରାସ୍ତାରେ ମୁଁ ଏହି ଦୁଇଜଣଙ୍କୁ ଝଗଡ଼ା କରୁଥିବା ଦେଖିଛି ।" ଶମ୍ଭୁ ଦାସ ଉତ୍ତର ଦେଲା ।



"ତେବେ ଏହି ଘିଅ ଟିଣଟି କାହାର? କାହାଠାରୁ କିଏ ଛଡ଼ାଇଲା?" ମୁଖିଆ ଶମ୍ଭୁ ଦାସକୁ ପଚାରିଲେ ।

"ଏହି ମୂଲିଆଟି ମୁଣ୍ଡରେ ଘିଅ ଟିଣଟି ଧରି ଯାଉଥିଲା, ଏହି ବଣିଆ ଟିଣଟି ଛଡ଼ାଇଲା । ମୁଁ ନିଜ ଆଖିରେ ଦେଖିଛି ।" ଶମ୍ଭୁ ଦାସ କହିଲା ।

ଶମ୍ଭୁ ଦାସ କହିବା ପ୍ରକାରେ ମୁଖିଆ ଘିଅ ଟିଣଟି ମୂଲିଆକୁ ଦିଆଇଲେ । ମୂଲିଆ ଘିଅ ଟିଣଟି ନେଇ ଶମ୍ଭୁ ଦାସକୁ ଦୁଇଟଙ୍କା ଦେଲା । ଏହାପରେ ଆଗେ ଆଗେ ମୂଲିଆ ଓ ପଛେ ପଛେ ବଣିଆ ତଥା ଶମ୍ଭୁ ଦାସ ଚାଲିଲେ ।

ଶମ୍ଭୁ ଦାସର ପ୍ରକୃତ ବଣିଆ ଜାଣିପାରି ଠିକ୍ କଲା ଯେ ଶମ୍ଭୁ ଦାସକୁ ଠକି ତା ଘିଅଟିଣ ଆଣିବ ।

ବଣିଆ କହିଲା—"ଦେଖ ଭାଇ, ମୁଁ ଭାବୁଥିଲି ଯେ ତୁମେ ମୋଠାରୁ ବୁଦ୍ଧିମାନ । କିନ୍ତୁ ଏବେ ଜଣାପଡ଼ିଗଲା ଯେ ତୁମଠାରୁ ଏହି ମୂଲିଆହିଁ ବଡ଼ ବୁଦ୍ଧିମାନ । ସେ ତୁମକୁ ଦୁଇଟଙ୍କା ଦେଇ କୋଡ଼ିଏ ଟଙ୍କାର ଘିଅ ନେଇଗଲା ।"

ଏହିକଥା ଶୁଣି ଶମ୍ଭୁ ଦାସର ମୁହଁ ଲାଲ ହୋଇଗଲା । ବଣିଆ ପୁଣି କହିଲା—"ତୁମେ ଯେଉଁ କାମ କଲ, ସେପରି କାମକରି ମୁଁ ମଧ୍ୟ ଏହି ଘିଅ ଟିଣଟି ଆଣିଛି । ଘିଅ ଦୋକାନରେ ଜଣେ ଗ୍ରାହକ ଏହି ଘିଅର ମୂଲ୍ୟ ଠିକ୍ କଲା । ଗ୍ରାହକ ଦୋକାନୀକୁ ଟଙ୍କାଦେବା ସମୟରେ ମୁଁ ତାକୁ ଠାରି ଟଙ୍କା ଦେବାକୁ ମନାକଲି । ଗ୍ରାହକ ବୁଝିପାରି ଦୋକାନୀକୁ କହିଲା ମୁଁ ତୁମକୁ



ଆଗରୁ ଠଙ୍କା ଦେଇ ସାରିଛି । ଦୋକାନୀ ତାକୁ ଠଙ୍କା ଦେଇନାହିଁ କହିଲା । ଉଭୟଙ୍କ ମଧ୍ୟରେ ଝଗଡ଼ା ବଢ଼ିଲା । ଜନଗହଳି ବଢ଼ିଲା । ସେତେବେଳେ ମୁଁ ଦୋକାନୀକୁ କହିଲି—"ଆରେ, ତୁମର ଏ କି ପ୍ରକୃତି? ଏହି ଲୋକଟି ଠଙ୍କା ଦେବାର ମୁଁ ନିଜେ ଦେଖିଛି ।" ଲୋକମାନେ ଦୋକାନୀକୁ ଗାଳିଦେଇ ଗ୍ରାହକକୁ ଘିଅ ଟିଣଟି ଦିଆଇଲେ । ଗ୍ରାହକ ଘିଅ ନେଇ ଘରକୁ ଯିବା ସମୟରେ ମୁଁ ପଛରେ ଗଲି । ଗ୍ରାହକ ମୋ ହାତରେ ଦୁଇଠଙ୍କା ଦେଲା । ମାତ୍ର ମୁଁ ପାଗଳ ନୁହେଁ ଯେ ସେ ଦୁଇଠଙ୍କା ନେଇ ଘିଅ ଛାଡ଼ିଦେବି । ବରଂ ମୁଁ ତାକୁ ଦୁଇଠଙ୍କା ଦେଇ ଘିଅ ଟିଣଟି ନେଇ ଚାଲି ଆସିଲି । ତୁମେ ମଧ୍ୟ ସେପରି କଲ, ମାତ୍ର ଘିଅ ମିଳିଲା ନାହିଁ । ଏହା ନିଶ୍ଚୟ ତୁମର ମୂର୍ଖତା! ମୁଁ କଣ କହିବି?"

ବଣିଆ ମୁହଁରୁ ଏହିକଥା ଶୁଣିବା ମାତ୍ରେ ଶମ୍ଭୁଦାସର ଲୋଭ ବଢ଼ିଲା । ସେ ତାକୁ ପଚାରିଲା—"ତେବେ ମୁଁ ଏହିକ୍ଷଣି କଣ କରିବି କହୁଛ?"

ମୂଲିଆ ମତେ ଯାହା କଲା, ତୁମେ ମଧ୍ୟ ତାହା କର । ମୁଁ ତୁମକୁ ସାହାଯ୍ୟ କରିବି । ମୋର ସାହାଯ୍ୟ ପାଇଁ ମତେ ମଧ୍ୟ କିଛି ଦିଅ ।" ବଣିଆ ବୁଝାଇଲା ।

ଶମ୍ଭୁଦାସ ଧାଇଁଯାଇ ମୂଲିଆକୁ କହିଲା—"ତୁ ମୋର ଘିଅ ବହୁତ ଦୂର ଧରି ଆସିଲୁଣି, ବର୍ତ୍ତମାନ ମତେ ଦେଇ ଦେ ।"

"ତୁ ସାକ୍ଷୀ ହେବାପାଇଁ ମୁଁ ପଇସା ତତେ ଦେଲି, ଆଉ ମତେ ଠକିବାପାଇଁ ଚେଷ୍ଟା କରନାହିଁ । ବଡ଼ ଖରାପ ହେବ, ବୁଝିଲୁ!" ମୂଲିଆ ଗାଳିଦେଇ କହିଲା ।

ଶମ୍ଭୁଦାସ ବଳାତ୍କାରରେ ଘିଅ ଟିଣଟି ଛଡ଼ାଇବା ଦେଖି ମୂଲିଆଟି ତାକୁ ଆକ୍ରମଣ କଲା । ଉଭୟଙ୍କ ମଧ୍ୟରେ ମରାମରି ହେଲେ । ଶେଷରେ ଦୁହେଁ ଥକିଯାଇ ଦେଖିଲେ ଯେ ଘିଅଟିଣ ସେଠାରେ ନାହିଁ । ବଣିଆର ମଧ୍ୟ ଦେଖାନାହିଁ ।



# ମହାକବି ଓ ଆମ୍ବ

ମହାକବି ଗାଲିବଙ୍କର ଆମ୍ବ ବହୁତ ପ୍ରିୟଥିଲା । ତାଙ୍କ କଥାବାର୍ତ୍ତା ମଧ୍ୟ ବଡ଼ ଚମତ୍କାର ଥିଲା ।

ଦିନେ ସନ୍ଧ୍ୟା ସମୟରେ ଗାଲିବ ସୁଲତାନଙ୍କ ସଙ୍ଗେ ଆମ୍ବ ବଗିଚାକୁ ଯାଇ ଆମ୍ବ ଗଛକୁ ଦେଖିବାକୁ ଲାଗିଲେ ।

ଗାଲିବ ପ୍ରତ୍ୟେକ ଗଛକୁ ଏକ ଧ୍ୟାନରେ ଦେଖୁଥିବା ଦେଖି ସୁଲତାନ ପଚାରିଲେ— "ଆପଣ ସେ ଗଛଗୁଡ଼ିକୁ ଏପରି କାହିଁକି ଦେଖୁଛନ୍ତି ?"

"କୌଣସି ଗଛରେ ମୋ ବାପା-ଗୋସେଇଁବାପାଙ୍କର ନାମ ଥିବପରି ଭାବି ଏକ ଲକ୍ଷ୍ୟରେ ଦେଖୁଛି !" ଗାଲିବ ଉତ୍ତର ଦେଲେ ।

ଗାଲିବଙ୍କ କଥାର ଚମତ୍କାର ଏହାଥିଲା ଯେ ସେ ଗଛ ଯଦି ତା ବାପା-ଗୋସେଇଁ-ବାପାଙ୍କର ଲୁହାଯିବ, ସେହି ଗଛର ଫଳଗୁଡ଼ିକ ତାଙ୍କର ହୋଇଯିବ । ସୁଲତାନ ତାଙ୍କର ଏପରି କଥା ଶୁଣି ଗଛରୁ ଆମ୍ବ ତୋଳାଇ ବହୁତ ଆମ୍ବ ଗାଲିବଙ୍କ ଘରକୁ କର୍ମଚାରୀଙ୍କ ଦ୍ୱାରା ପଠାଇ ଦେଲେ ।

ଦିନେ ଗାଲିବ ନିଜ ଘର ଅଗଣାରେ ବସି ଆମ୍ବ ଖାଉଥିବା ସମୟରେ ଜଣେ ବନ୍ଧୁ ଯାହାଙ୍କୁ କି ଆମ୍ବ ମୋଟେ ଭଲ ଲାଗୁ ନଥାଏ, ଆସି ପହଞ୍ଚିଲା । ଏ ସମୟରେ ଗଳିରୁ ଗୋଟିଏ ଗଧ ବାହାରି ଆମ୍ବଟିକୁ ଶୁଙ୍ଘିଦେଇ ଚାଲିଗଲା । ଏହାଦେଖି ଗାଲିବଙ୍କୁ ତାଙ୍କ ସାଙ୍ଗ ପଚାରିଲା— "ଗାଲିବ ସାହେବ, ଦେଖୁଛନ୍ତି ନା ? ଗଧ ମଧ୍ୟ ଆମ୍ବ ପସନ୍ଦ କରୁନାହିଁ ।" "ହଁ ବନ୍ଧୁ, ଗଧକୁ ଆମ୍ବ ପସନ୍ଦ ଆସିବ କିପରି ?" ଗାଲିବ ଭଲଭାବେ ଉତ୍ତର ଦେଲେ ।





# ଦିନକର ସୁଲତାନ

[ ୪ ]

ସୁସ୍ଥ ହେବା ପରେ ଅବୁ ଅଲ ହସନକୁ ଘରେ ବସି ରହିବାରେ ଅଡୁଆ ଲଗିଲା । ସେ ପୂର୍ବପରି ସୂର୍ଯ୍ୟାସ୍ତ ସମୟରେ ସେହି ପୋଲ ଉପରେ ଅଚିହ୍ନା ଅତିଥିଙ୍କ ପାଇଁ ଅପେକ୍ଷା କଲା ।

ସେ ପୁନର୍ବାର ଯେଉଁଦିନ ସେଠାକୁ ଗଲା, ଉକ୍ତଦିନ ଖଲିଫା ବେଶ ବଦଳାଇ ସେହିବାଟ ଦେଇ ଫେରୁଥିଲେ । ହସନ ଆସୁଥିବା ଲୋକଙ୍କ ମଧ୍ୟରେ ଦେଖିଲା ଯେ ପୂର୍ବ ସୌଦାଗର ଓ ସେହି ଭୀମକାୟ ଚାକର ଆସୁଛନ୍ତି ।

ଥରେ ପରିଚୟ ହେବା ପରେ ପୁନର୍ବାର ସମ୍ପର୍କ ନରଖିବା ଦୃଷ୍ଟିରୁ ହସନ ସେମାନଙ୍କୁ ଦେଖି ନଦେଖିଲାପରି ନଦୀକୁ ଚାହିଁ ରହିଲା । ମାତ୍ର ଖଲିଫା ତାକୁ ଛାଡ଼ିବାକୁ ଚାହୁଁ ନଥିଲେ । ତା ଦ୍ୱାରା ଖଲିଫାଙ୍କୁ ବଡ଼ ଆନନ୍ଦ ମିଳିଥିଲା । ଏହା ବ୍ୟତୀତ ହସନ ଘରକୁ ଫେରିବା ପରେ ତାର ଅସୁବିଧା ଓ ପାଗଳଖାନାରେ କଷ୍ଟ ବିଷୟ ଜାଣି ଖଲିଫା ଯେ କୌଣସି ଉପାୟରେ ତାକୁ ପୁରସ୍କାର ଦେବାକୁ ଠିକ୍ କରିଥିଲେ ।

ଖଲିଫା ତା ପାଖକୁ ଯାଇ କହିଲେ— "ବନ୍ଧୁ, ଅବୁ ଅଲ ହସନ, ଠିକ୍ ଅଛ ନା? ତୁମକୁ ଆଲିଙ୍ଗନ କରିବାକୁ ମୋର ଇଚ୍ଛା ହେଉଛି ।"

ହସନ ନିଜ ଦୃଷ୍ଟି ଫେରାଇ କହିଲା— "ଯାଅ. ଯାଅ, ମୁଁ ତୁମକୁ ଜାଣେନାହିଁ, ତୁମେ କିଏ?"

"ମୁଁ ବଡ଼ ସହଜରେ ତୁମକୁ ଚିହ୍ନି ଦେଲି । ମାସେ ତଳେ ତୁମ ଘରେ ଗୋଟିଏ ଦିନ ଆନନ୍ଦରେ କଟାଇଥିଲି । ମାତ୍ର ତୁମେ ମତେ ଜାଣିନାହିଁ କହୁଛ, ମୁଁ କିପରି ବିଶ୍ୱାସ କରିବି?" ଖଲିଫା କହିଲେ ।

"ଆଲ୍ଲାଙ୍କୁ ସାକ୍ଷୀ ରଖି କହୁଛି ଯେ ମୁଁ ତୁମକୁ ଜାଣେନାହିଁ, ତୁମେ ନିଜ ରାସ୍ତାରେ ଚାଲିଯାଅ।" ହସନ କହିଲା।

"କଣ ତୁମେ ତୁମର ଅତିଥିଙ୍କୁ ଭୁଲିଗଲ ?" ଖଲିଫା ପୁଣି ପଚାରିଲେ।

ହସନ ଏହାଶୁଣି କିଛି ନକହି ଚାଲିଯିବା ପାଇଁ ହାତରେ ଠାରିଲା। ଖଲିଫା ହସନର ବେକରେ ଦୁଇହାତ ପକାଇ କହିଲେ— "ତୁମର ଏପରି ବ୍ୟବହାର ମତେ ଭଲ ଲାଗୁନାହିଁ। ତୁମେ ପୁଣି ଥରେ ମତେ ଘରକୁ ଡାକିନିଅ ଓ ମୋ ଉପରେ ତୁମେ କାହିଁକି ବିରକ୍ତ ହୋଇଛ ଜଣାଇ ଦିଅ। ସେପର୍ଯ୍ୟନ୍ତ ମୁଁ ତୁମକୁ କଦାପି ଛାଡ଼ିବି ନାହିଁ ?"

ଅବୁ ଅଲ ହସନ କ୍ରୋଧହୋଇ ଗର୍ଜି ଉଠିଲା— "ମତେ ଏତେ ଅସୁବିଧାରେ ପକାଇ ପୁଣି ମୋର ଅତିଥି ହୋଇ ଘରକୁ ଆସିବା କଥା କିପରି କହି ପାରୁଛ? ତୁମର ମୁହଁ ଚାହିଁବା ଭଲ ନୁହେଁ।"

ଏହାପରେ ଖଲିଫା ହସନକୁ ଆଲିଙ୍ଗନ କରି କହିଲେ- "ମିତ୍ର, ମୁଁ ଆସିବା ଦ୍ୱାରା ତୁମେ ଯଦି କୌଣସି କଷ୍ଟ ପାଇଲ, ବିଶ୍ୱାସ କର ଯେ ମୁଁ ଜାଣିଶୁଣି ତୁମକୁ କଷ୍ଟ ଦେଇନାହିଁ। ତୁମକୁ ଯେଉଁ କଷ୍ଟ ହୋଇଛି କହିବ ଯଦି ମୋ ଦ୍ୱାରା ଯାହାକିଛି ହୋଇ ପାରିବ, ମୁଁ କରିବି।" ଏପରି କହି ସେ ମଧ୍ୟ ହସନ ପାଖରେ ବସିଲେ।



ଏହାପରେ ହସନ ଶାନ୍ତହୋଇ କହିଲା— "ସେଦିନ ରାତିରେ ତୁମେ କବାଟ ବନ୍ଦ ନକରି ଚାଲିଗଲ। ମୁଁ ଯାହା ଅସୁବିଧାରେ ପଡ଼ିଲି ସେକଥା ଶୁଣିବ ?" ହସନ ସବୁକଥା ଶୁଣାଇଲା। ଖଲିଫାଙ୍କ ମହଲରେ ଯାହା ହୋଇଥିଲା ହସନ କୌଣସି ଜାଦୁଗରର ମାୟା ଭାବୁଥିବା ଜାଣି ଖଲିଫା ନହସି ରହି ପାରିଲେ ନାହିଁ।

ଖଲିଫାଙ୍କୁ ହସିବାର ଦେଖି ହସନ କହିଲା— "ମୋର କଷ୍ଟ କଥାଗୁଡ଼ିକ ତୁମେ ହସି ଉଡ଼ାଇ ଦେଉଛ। ମୋ କଥା ତୁମେ ବିଶ୍ୱାସ କରୁନାହିଁ ଯଦି ମୋ ପିଠିରେ ଥିବା ଚାବୁକ ମାଡ଼ ଚିହ୍ନ ଦେଖ।" ହସନ ନିଜ ଜାମା ବାହାର କରି ଚାବୁକ ମାଡ଼ ଚିହ୍ନ ଦେଖାଇଲା।



ମାତ୍ର ଚିହ୍ନ ଦେଖି ଖଲିଫାଙ୍କ ଆଖି ଲୁହରେ ଛଳମଳ ହୋଇଗଲା । ସେ ହସନକୁ ଆଲିଙ୍ଗନ କରି କହିଲେ—"ଭାଇ, ମତେ ଆଜି ପୁଣି ଅତିଥି ରୂପେ ନେଇଯାଅ । ଏହା ବଦଳରେ ଆଲ୍ଲା ତୁମ ସକାଶେ ଏହାର ଦଶହଜାର ଗୁଣ ଭଲ କରିବେ ।"

ଜଣେ ଲୋକକୁ ଦୁଇଥର ଆତିଥ୍ୟ ଦେବା ହସନର ନିୟମ ବିରୁଦ୍ଧ ଥିଲା । ତଥାପି ସେ ନିୟମ ଖଣ୍ଡନ କରି ଖଲିଫାଙ୍କୁ ଘରକୁ ନେବା ସମୟରେ ବାଟରେ ତାଙ୍କୁ କହିଲା—"ଉପାୟହୀନ ହୋଇ ମୁଁ ତୁମକୁ ଅତିଥି ରୂପେ ନେଉଛି । ମାତ୍ର ତୁମକୁ ମୋର ଏହି ଏକମାତ୍ର ପ୍ରାର୍ଥନା ଯେ ସକାଳୁ ଯିବା ସମୟରେ ଯେପରି କବାଟ ବନ୍ଦ କରିବାକୁ ଆପଣ ଭୁଲିଯିବେ ନାହିଁ ।"

ଖଲିଫା ମୁରୁକିହସା ଦେଇ ସେପରି କରିବା ପାଇଁ ସ୍ୱୀକାର କଲେ ।

ଦୁହେଁ ଘରେ ପହଞ୍ଚିଲେ । ଜଣେ ଚାକର ତାଙ୍କୁ ଖାଇବାକୁ ଦେଲା । ମଦ ମଧ୍ୟ ଦେଲା । ମଦ ପିଇ ଖଲିଫା ଅଚାନକ ପଚାରିଲେ—"ବନ୍ଧୁ, କେବେ କୌଣସି ସ୍ତ୍ରୀ ପ୍ରତି ତୁମେ ଆକୃଷ୍ଟ ହୋଇନାହଁ? ବିବାହ କରିବା ପାଇଁ କଣ ତୁମର ଇଚ୍ଛା ନାହିଁ?"

ଏହାଶୁଣି ହସନ କହିଲା—"ମତେ ତ ସାଙ୍ଗମାନଙ୍କ ପାଖରେ ସମୟ କଟାଇଲେ ବଡ଼ ଆନନ୍ଦ ମିଳେ । ମଦ ଓ ମଧୁର କଥାବାର୍ତ୍ତା ହେଲେ ଅନ୍ୟକଥା ମୋ ମନକୁ ଆସି ନଥାଏ । ଏହାର ଅର୍ଥ ନୁହେଁ ଯେ ମୁଁ ସ୍ତ୍ରୀ ମାନଙ୍କୁ ଭଲ ପାଉନାହିଁ । ସଇତାନ ସେହି ବିଚିତ୍ର ସ୍ୱପ୍ନରେ ଏପରି ଯୁବତୀମାନଙ୍କୁ ଦେଖାଇଲା ଯେଉଁମାନେ ହସି, ନାଚି, ଗାଇ ସମ୍ମୁଖରେ ଥିବା ବ୍ୟକ୍ତିଙ୍କ ମନ ସନ୍ତୁଷ୍ଟ କରିଥାନ୍ତି ସେପରି ସ୍ତ୍ରୀଟିଏ ମିଳିଲେ ବହୁତ ଧନ ଖର୍ଚ୍ଚ କରି କିଣିବା ପରେ ତାକୁ ବିବାହ କରିପାରେ । ମାତ୍ର ଏପରି ଯୁବତୀ କେବଳ କୌଣସି ଖଲିଫା କିମ୍ବା ମନ୍ତ୍ରୀ ଜାଫରଙ୍କ ଅନ୍ତଃପୁରରେ ଥିବ । ଏଣୁ ମୁଁ ଏପରି ଆଶା ରଖେନାହିଁ ।"

"ସାଧାରଣ ସ୍ତ୍ରୀଙ୍କ କଥାବାର୍ତ୍ତା ମତେ ମୋଟେ ଭଲ ଲାଗେନାହିଁ, ଏପରି ସ୍ତ୍ରୀଙ୍କ

ପାଖରେ ସମୟ ନଷ୍ଟ କରିବା ପରିବର୍ତ୍ତେ ସାଙ୍ଗମାନଙ୍କ ପାଖରେ ରହି ସମୟ କାଟିବା ମତେ ଖୁବ୍ ଭଲ ଲାଗେ ।” ହସନ ପୁଣି କହିଲା ।

ଏହାପରି କହି ଖଲିଫାଙ୍କ ହାତରେ ଥିବା ମଦ ପାତ୍ରରୁ ମଦ ପିଇ ମୂର୍ଚ୍ଛା ହୋଇ ପଡ଼ିଗଲା । ଖଲିଫା ଏଥର ମଧ୍ୟ ପୂର୍ବପରି ମଦରେ ବେହୋଶ ହେବାପାଇଁ ଔଷଧ ମିଶାଇଥିଲେ ।

ଖଲିଫାଙ୍କ ଠାରୁ ସଙ୍କେତ ପାଇବା ମାତ୍ରେ ତାଙ୍କ ଚାକର ହସନକୁ କାନ୍ଧରେ ପକାଇ ଚାଲିଲା । ତା ପଛରେ ଖଲିଫା ବାହାରକୁ ଆସିବା ପୂର୍ବରୁ କବାଟ ବନ୍ଦ କରିଦେଲେ, କାରଣ ଏଥର ଖଲିଫା ହସନକୁ ଫେରାଇବା ପାଇଁ ଇଚ୍ଛାକରୁ ନଥିଲେ ।



ଖଲିଫା ଓ ତାଙ୍କ ଚାକର ଗୁପ୍ତମାର୍ଗରେ ଯାଇ ରାଜମହଲରେ ପହଞ୍ଚିଲେ । ପୂର୍ବପରି ଖଲିଫା ନିଜ ପୋଷାକ ପିନ୍ଧାଇ ନିଜ ଶେଯରେ ଶୁଆଇ ଦେଲେ । ଏହାପରେ ମନଶୁରକୁ ଡ଼କାଇ ଆଦେଶ ଦେଲେ ଯେ ସେ ଖଲିଫାଙ୍କୁ ନମାଜ ପଢ଼ିବା ପୂର୍ବରୁ ଯେପରି ଉଠାଇବ । ତା ପରେ ସେ ଅନ୍ୟ ବଖରାକୁ ଯାଇ ଶୋଇଗଲେ ।

ଆରଦିନ ସକାଳୁ ମନଶୁର ଠିକ୍ ସମୟରେ ଖଲିଫାଙ୍କୁ ଉଠାଇଲା । ଖଲିଫା ଯାଇ ହସନକୁ ନିଘୋଡ଼ ନିଦରେ ଶୋଇଥିବା ଦେଖି ପୂର୍ବଥର ହସନ ଯେଉଁ ଯେଉଁ ବଖରାରେ ଯେଉଁ ଯେଉଁ ଯୁବତୀମାନଙ୍କୁ ଦେଖିଥିଲା, ସେମାନଙ୍କୁ ଡ଼କାଇଲେ । ଗାଇବା-ବଜାଇବା ଲୋକଙ୍କୁ ମଧ୍ୟ ଡ଼ାକି ନିଜ ନିଜ ସ୍ଥାନରେ ଠିଆ କରାଇଲେ । ସମସ୍ତଙ୍କୁ କଣ କଣ କରିବାକୁ ହେବ, ଆଦେଶ ଦେଲେ । ତା ପରେ ହସନର ନାକ ପାଖରେ ଏକ ପଦାର୍ଥ ଶୁଙ୍ଘାଇବା ପାଇଁ ଖଲିଫା ଆଦେଶ ଦେଇ ପର୍ଦା ଆଢୁଆଳରେ ଲୁଚିଗଲେ ।

ସେହି ପଦାର୍ଥଟିର ଗନ୍ଧ ବାଜିବା ମାତ୍ରେ ହସନର ନିଶା ଛାଡ଼ିଗଲା । ସେତେବେଳେ ଏକ ଆଶ୍ଚର୍ଯ୍ୟ ଧରଣର ସଙ୍ଗୀତ ଶୁଣାଗଲା । କେତେ ସମୟ ହସନ ଆଖି ବନ୍ଦକରି ସଙ୍ଗୀତ ଶୁଣିଲା । ତା ପରେ ଆଖି ଖୋଲି ଚତୁର୍ଦ୍ଦିଗକୁ ଲକ୍ଷ୍ୟକରି ଭାବିଲା ଯେ ଏହି ବଖରାଟିକୁ ସେ ନିଶ୍ଚୟ ଆଗରୁ ଦେଖିଛି । ସେହି ସାଜସଜ୍ଜା, ସେହି ଶେଯଥିଲା ଓ ଏହାଠାରୁ ବଳି ବଡ଼ିଆ

କଥାଥିଲା ଯେ ସେହି ପୂର୍ବ ପରିଚିତ ଯୁବତୀ-ମାନେ ସେଠାରେ ଥିଲେ ! ସେ ବସା-ଉଠା କରି ଜୋରରେ ଆଖି ମଳିଲା ।

ସଙ୍ଗୀତ ବନ୍ଦ ହୋଇଗଲା । ବିଖରରେ ଶାନ୍ତିର ଛାୟା ଖେଳିଗଲା । ହସନକୁ ଦେଖିବା ମାତ୍ରେ ଯୁବତୀମାନଙ୍କ ଆଖି ତଳକୁ ହୋଇଗଲା ।

ଏ ସବୁ ଦେଖି ହସନ କହିଲା—"ଆରେ, ହସନ! ପୁଣି ତୋର ଚମଡ଼ା ବାହାର ହୋଇଯିବ! ଆଜି ଏହି ଭ୍ରମ, କାଲି ଚୈବୁକ ମାଡ଼! ହାତକଡ଼ି ତଥା ଅନ୍ଧାର ଘର! ଆରେ ସୌଦାଗର, ତୁ ପୁଣି କବାଟ ବନ୍ଦ ନକରି ଚାଲିଗଲୁ କରେ! ତତେ ନରକରେ ପକାଇ ତୋର ହାଡ଼ ଭାଙ୍ଗି ଦିଆଯିବ! ମୋସଲର ସବୁ ସୌଦାଗରଙ୍କ କ୍ଷତି ହେଉ! ମୋସଲ ଶହର ମାଟି ହୋଇଯାଉ ।" ଏପରି ଚିତ୍କାର କରି ଉଠିବା ସଙ୍ଗେ ସଙ୍ଗେ ଅନେକ ଥର ଆଖି ବନ୍ଦକରି ପୁଣି ଖୋଲି ଦେଖିଲା । ଏହାପରେ ସେ ମନକୁମନ କହିଲା—"ଆରେ ଭାଗ୍ୟହୀନ! ପୁଣି ଶୋଇପଡ଼ । ସଇତାନ ଛାଡ଼ିବା ପର୍ଯ୍ୟନ୍ତ ଉଠନାହିଁ, ଏ କଥା ମନେରଖ ଯେ ଏହି ଯୁବତୀମାନଙ୍କୁ ଦେଖିଲେ କାଲି ତୋର ଅବସ୍ଥା ଖରାପ ହୋଇଯିବ ।" ପୁଣି ଗୃହର ଘୋଡ଼ାଇ ହୋଇ ଘୁଙ୍ଘୁଡ଼ି ମାରି ଶୋଇ ପଡ଼ିଲା ।

ଏ ସବୁ ଘଟଣା ଦେଖି ଖଲିଫା ହସି-ହସି ଅସ୍ତ-ବ୍ୟସ୍ତ ହୋଇ ପଡ଼ିଲେ । ମାତ୍ର ହସନ ଶୋଇବ କିପରି ? ତା ସକାଶେ ଅତ୍ୟନ୍ତ ସୁନ୍ଦର



'ଗନ୍ନା' ନାମକ ଯୁବତୀ ତା ପାଖରେ ବସି ଡ଼ାକୁଥିଲା—"ସରକାରଙ୍କ ଦୟାହେଉ! ସକାଳ ନମାଜ ପଢ଼ିବା ସମୟ ହୋଇ ଗଲାଣି ।"

ହସନ ଗୃଦର ଭିତରୁ ଗର୍ଜି ଉଠିଲା—"ସଇତାନ, ତୁ ଗୃଲି ଯା ।"

"ସରକାର ନିଶ୍ଚୟ କୌଣସି ଖରାପ ସ୍ୱପ୍ନ ଦେଖିଥିବେ । ମୁଁ ସଇତାନ ନୁହେଁ, ଗନ୍ନା ।" ଯୁବତୀଟି କହିଲା ।

ହସନ ଦେହରୁ ଗୃଦର ଉଠାଇ ଆଖି ଖୋଲି ଦେଖିଲା ଯେ ଗନ୍ନା ଶେଯରେ ବସିଛି । ବାକି ସବୁ ଯୁବତୀମାନେ ତିନି ତିନି ଧାଡ଼ିରେ ଠିଆ ହୋଇଥିଲେ । ସମସ୍ତଙ୍କ ନାମ ହସନ ଜାଣିଥିଲା ।

"ତୁମେ ସବୁ କିଏ? ମୁଁ କିଏ?" ହସନ ସେହି ଯୁବତୀମାନଙ୍କୁ ପଗୃରିଲା ।

ସମସ୍ତେ ଏକ ସ୍ୱରରେ ଉତ୍ତର ଦେଲେ—"ଆପଣ ଆମର ଖଲିଫା ହାରୁନାଲ୍ ରଶୀଦ ଅଟନ୍ତି ।"

"କଣ ମୁଁ ଅବୁ ଅଲ୍ ହସନ ନୁହେଁ?" ହସନ ପୁଣି ପଗୃରିଲା ।

"ଆପଣ କଦାପି ଅବୁ ଅଲ୍ ହସନ ହୋଇ ନପାରନ୍ତି, ଆପଣ ଆମର ସରକାର ।" ସମସ୍ତେ ଏକାଥରେ ଉତ୍ତର ଦେଲେ ।

ହସନ ଗନ୍ନାକୁ ଗୃହିଁ କହିଲା—"ଯାହା ହେଉନା କାହିଁକି, ତୁ ମୋର କାନ କାଟିଦେଲେ ଭଲ ହେବ ।"



ଗଲା ଜୋରରେ ତା କାନ କାଟିଦେଲା ।

ହସନ ଚିତ୍କାର କଲା—"ହଁ, ହଁ, ମୁଁ ପ୍ରକୃତରେ ହାରୁନଲ ରଶୀଦ ।"

ପୁଣି ସଙ୍ଗୀତ ଆରମ୍ଭ ହେଲା । ଯୁବତୀମାନେ ହାତ ଧରାଧରି ହୋଇ ହସନ ଶୋଇଥିବା ଶେଯର ଚତୁର୍ଦ୍ଦିଗରେ ନାଚିଲେ । ହସନ ଆନନ୍ଦରେ ଗୃଦର ଗୋଟିଏ ପାଖକୁ ତଥା ତକିଆ ଅନ୍ୟ ପାଖକୁ ଠେଲି ଯୁବତୀମାନଙ୍କ ସଙ୍ଗେ ଆନନ୍ଦରେ ମଧ୍ୟ ନାଚିଲା ।

ଖଲିଫା ହସ ବନ୍ଦକରି ନପାରି ପର୍ଦା ପଛରୁ ବାହାରକୁ ଆସି କହିଲେ—"ହସନ, ତୁମେ ମତେ ହସାଇ ହସାଇ ମାରିଦେଲ ।"

ହଠାତ୍ ନାଚ ବନ୍ଦ ହୋଇଗଲା । ଯୁବତୀମାନେ ଠିଆହୋଇ ରହିଲେ । ହସନ ମଧ୍ୟ ସମସ୍ତଙ୍କ ସଙ୍ଗେ ଠିଆହୋଇ ରହିଲା । ସେ ଖଲିଫାଙ୍କୁ ଦେଖିବା ମାତ୍ରେ ଚିହ୍ନିନେଲା ଯେ ସେ ମୋସଲର ସୌଦାଗର । ସେ ଚଞ୍ଚଳ ସବୁକଥା ଜାଣିଦେଲା ।

ହସନ ଜାଣିଲା ଯେ ଖଲିଫାହିଁ ଏ ସବୁ କରିଛନ୍ତି । ସ୍ୱୟଂ ଖଲିଫା ଠିଆ ହୋଇଥିବା ଜାଣି ମଧ୍ୟ ସେ ସାହାସ କରି ତାଙ୍କୁ କହିଲା—"ହେ ମୋସଲର ସୌଦାଗର, ତୁମେ କବାଟ ବନ୍ଦ କରି ନଥିବାରୁ କଣ ଦଣ୍ଡଦେବ ଜାଣ?"

ଖଲିଫା ପୁଣି ଜୋରରେ ହସି ହସନକୁ ଆଲିଙ୍ଗନ କରି କହିଲେ—"ଭାଇ, ତୁମେ ଯେଉଁ କଷ୍ଟ ଉଠାଇଛ ସେଥିପାଇଁ ତୁମର ସବୁଠାରୁ ବଡ଼ ଇଚ୍ଛା ପୂର୍ଣ୍ଣକରି ତୁମକୁ ନିଜ ଲୋକଙ୍କ ସଙ୍ଗେ ଭେଟ କରାଇବି । ବୁଝିଲ ।"

ଏହାପରେ ଖଲିଫା ଏକ ମୂଲ୍ୟବାନ ପୋଷାକ ହସନକୁ ପିନ୍ଧାଇ ପଚାରିଲେ—"ହସନ, ମାଗ, ତୁମେ ଯାହା ଚାହିଁବ ତାହା ଦେବି ।"

ହସନ ଖଲିଫାଙ୍କୁ ସଲାମ କରି କହିଲା—"ସରକାର! ଜୀବନ ଥିବା ପର୍ଯ୍ୟନ୍ତ ଆପଣଙ୍କ ଆଶ୍ରୟରେ ସ୍ଥାନ ପାଇଲେ ତାହା ମୋ ପକ୍ଷେ ବଡ଼ ସମ୍ପତ୍ତି ହେବ ।"

(ଆସନ୍ତା ଅଙ୍କରେ ସମାପ୍ତ)



# ଅଯୋଗ୍ୟ

ପ୍ରାଚୀନ ଯୁଗରେ କଳିଙ୍ଗ ରାଜ୍ୟରେ ଧୀରସିଂହ ଶାସନ କରୁଥିଲେ । ତାଙ୍କୁ ଥରେ ଭୟଙ୍କର ଚର୍ମରୋଗ ହୋଇଥିଲା । ନାନା ପ୍ରକାର ଚିକିତ୍ସା କଲେ ମଧ୍ୟ ରୋଗ କମ୍ ନହୋଇ ବୃଦ୍ଧି ହେଲା । ଏପରି ଅବସ୍ଥା ଦେଖି ରାଜବୈଦ୍ୟ ଜଣାଇଲା—"ମହାରାଜା, ଏହି ରୋଗ ଭଲ ହେବାପାଇଁ କେବଳ ଜଣେ ଅଯୋଗ୍ୟ ବ୍ୟକ୍ତିର ରକ୍ତ ଆପଣଙ୍କ ଦେହରେ ଘଷିବାକୁ ହେବ ।"

ସୈନ୍ୟମାନେ ଦେଶ ସାରା ଖୋଜି ଖୋଜି ଅଷ୍ଟବକ୍ର ନାମକ ଜଣେ ବ୍ୟକ୍ତିକୁ ଧରି ଆସିଲେ । ସେ କୌଣସି କାମ ଜାଣି ନଥିଲା । ଏହାଛଡ଼ା ତା ମା-ବାପା ମଧ୍ୟ ତାକୁ ଦେଖି ଘୃଣା କରୁଥିଲେ । ଏଣୁ ସେମାନେ ସୁନା ନେଇ ଅଷ୍ଟବକ୍ରକୁ ବିକିଦେଲେ ।

ରାଜାଙ୍କ ଆଗରେ ଅଷ୍ଟବକ୍ରକୁ ବଧ କରିବା ସମୟରେ ସେ ଅଟ୍ଟହାସ କରି କହିଲା—"ଏଥିରୁ ଜଣା ପଡ଼ିଲା ଯେ ମୁଁ ଅଯୋଗ୍ୟ ନୁହେଁ । ମୋ ରକ୍ତ ସମାନ ଔଷଧ ପୃଥିବୀରେ ନାହିଁ ।"

ଏହିକଥା ଶୁଣି ରାଜା ଅଷ୍ଟବକ୍ରକୁ ମୁକ୍ତକରି ରାଜବୈଦ୍ୟକୁ ଗାଳିଦେଲେ ଓ ଅନ୍ୟ ଔଷଧ ବ୍ୟବହାର କରି ସେ ରୋଗରୁ ମୁକ୍ତ ହେଲେ ।





# ରାଣୀ ଓ ଦାସୀ

ବୈଶାଳୀ ନଗରରେ ହୀରଦତ୍ତ ନାମକ ଜଣେ ଧନୀ ଥିଲା । ତାର ବହୁତ ଦିନ ପର୍ଯ୍ୟନ୍ତ ସନ୍ତାନ ନଥିଲା, ଶେଷରେ ଚାଳିଶ ବର୍ଷ ବୟସରେ ଗୋଟିଏ ଅତି ସୁନ୍ଦର କନ୍ୟା ଜନ୍ମ ହେବାରୁ ହୀରଦତ୍ତର ଖୁସିର ସୀମା ରହିଲା ନାହିଁ ।

ମାତ୍ର ତା ଖୁସି ଚଞ୍ଚଳ ଦୁଃଖରେ ବଦଳି ଗଲା । ଦିନେ ଶିଶୁଟିକୁ ବାହାରେ ଦୋଳରେ ଶୁଆଇଥିବା ସମୟରେ ଗୋଟିଏ ଚିଲ ଆସି ଶିଶୁଟି ଶୋଇଥିବା ବସ୍ତ୍ରଟିକୁ ପାଦ ନଖରେ ଭିଡ଼ିଧରି କେଉଁଆଡ଼େ ଉଡ଼ିଗଲା । ହୀରଦତ୍ତ ସେହି ଚିଲକୁ ଶିକାର କରି ଶିଶୁକୁ ଉଦ୍ଧାର କରିବାପାଇଁ ଶିକାରୀମାନଙ୍କୁ ପଠାଇଲା । ସେ ସବୁ ଦେଶରେ ପ୍ରଚାର କରାଇଲା ଯେ ଯିଏ ତା କନ୍ୟାକୁ ଆଣିଦେବ ତାକୁ ଅପାର ଧନ ଦେବ । ମାତ୍ର ତାର ଚେଷ୍ଟା ସଫଳ ହେଲାନାହିଁ ।

ପ୍ରକୃତରେ ଶିଶୁଟିକୁ ଉଠାଇ ନେଇଥିବା ପକ୍ଷୀ ଚିଲ ନଥିଲା, ଶାପ ପାଇ ଅଳ୍ପଦିନ ପାଇଁ ଯକ୍ଷଲୋକରୁ ବହିଷ୍କୃତ ଏକ ଯକ୍ଷିଣୀ ପକ୍ଷୀ ରୂପେ ଆକାଶରେ ଉଡୁଥିବା ସମୟରେ ସେହି କନ୍ୟାଟିକୁ ଦେଖି ଆନନ୍ଦରେ ପାଳିବା ପାଇଁ ନିଶ୍ଚୟ କଲା ।

ଶିଶୁଟିକୁ ପକ୍ଷୀ ଉଠାଇ ନେଇଥିବାରୁ ତାର ନାମ ଶକୁନ୍ତକୁମାରୀ ରଖାଗଲା ।

ଶକୁନ୍ତକୁମାରୀ ଯକ୍ଷିଣୀର ପାଳନ-ପୋଷଣରେ ଷୋଳବର୍ଷ ସମୟକୁ ବ୍ରହ୍ମଜ୍ଞାନ ତଥା ଯୁକ୍ତି-ତର୍କରେ ଧୁରନ୍ଧର ହୋଇଗଲା ।

ଦିନେ ଯକ୍ଷିଣୀ ଶକୁନ୍ତକୁମାରୀକୁ କହିଲା— "ଝିଅ, ମୋର ଶାପ ସମୟ ଶେଷ ହୋଇଗଲା । ଏବେ ଯକ୍ଷଲୋକକୁ ଚାଲି ଯାଉଛି । ତତେ ସୌନ୍ଦର୍ଯ୍ୟ ତଥା ବିଚକ୍ଷଣ ବୁଦ୍ଧି ମଧ୍ୟ ପ୍ରାପ୍ତ ହୋଇଛି । ଯେ କୌଣସି ରାଜକୁମାର ତତେ



ଖୁସି ହୋଇ ବିବାହ କରିବ । ତୁ ଏହି ରାସ୍ତାରେ ଗଲେ ତୋର ପିତାଙ୍କ ରାଜ୍ୟ ବୈଶାଳୀ ନଗର ଦେଖାଯିବ । ତୁ ନିଜ ମା-ବାପାଙ୍କୁ ମିଶି ଯୋଗ୍ୟବ୍ୟକ୍ତି ସହ ବିବାହ କରିବୁ ଓ ମୁଁ ତତେ ଶିଖାଇଥିବା ବିଦ୍ୟା ପ୍ରୟୋଗ କରି ସୁଖପୂର୍ବକ ଜୀବନ ଅତିବାହିତ କରିବୁ ।" ଏପରି କହି ଯକ୍ଷିଣୀ ଯକ୍ଷଲୋକକୁ ଚାଲିଗଲା ।

ଶଙ୍କୁତକୁମାରୀ ଅଧିକ ଜୀବନ ଜଙ୍ଗଲରେ କଟାଇଥିଲେ ମଧ୍ୟ ସବୁ ପ୍ରକାର ସଭ୍ୟ ଜୀବନ ବିଷୟରେ ପରିଚିତ ଥିଲା । ଏଣୁ ସେ ସଭ୍ୟ ଜୀବନ-ଯାପନ କରିବା ପାଇଁ ନିଶ୍ଚୟ କରି ବୈଶାଳୀ ନଗର ଅଭିମୁଖେ ଚାଲିଲା ।

ସେ ଜଙ୍ଗଲରେ ଅଳ୍ପ ଦୂର ଯିବା ପରେ ଗୋଟିଏ ବିରାଟ ରାଜମହଲ ଦେଖିଲା । ଶଙ୍କୁତକୁମାରୀ ମହଲ ଭିତରକୁ ଯାଇ ଦେଖିଲା ଯେ ହାତୀ, ଘୋଡ଼ା, ଦ୍ୱାରପାଳ, ଚାକର, ଦାସ-ଦାସୀ ସବୁ ଗାଢ଼ ନିଦରେ ଶୋଇଛନ୍ତି । ସେ ଭିତରକୁ ଯାଇ ଗୋଟିଏ ଶୟନକକ୍ଷରେ ପ୍ରବେଶ କଲା ।

ସେଠାରେ ଗୋଟିଏ ରାଜକୁମାର ଶୋଇଥିଲା । ସେହି କକ୍ଷର ଗୋଟିଏ କାନ୍ଥରେ ଥିବା ଘୋଡ଼ା ସବାର ଚିତ୍ରରେ ରାଜକୁମାରଙ୍କ ବେକରେ ଗୋଟିଏ ହାର ଚିତ୍ରିତ ହୋଇଥିବା ସ୍ଥଳେ ଶୋଇଥିବା ରାଜକୁମାର ବେକରେ କିଛି ନଥିଲା । ସେହି ହାରଟି ରାଜକୁମାରର ପାଦତଳେ ଥିବା ପେଡ଼ିରେ ଥିଲା ।

ଶଙ୍କୁତକୁମାରୀ ଭାବିଲା ଯେ ସେହି ହାରଟି ତା ବେକରେ ନଥିବା ତଥା ସେ ଗାଢ଼ ନିଦ୍ରାରେ ଶୋଇଥିବା ମଧ୍ୟରେ ନିଶ୍ଚୟ କୌଣସି ସମ୍ପର୍କ ଥିବ । ସେ ବିଷୟରେ ଜାଣିବା ସକାଶେ ଶଙ୍କୁତକୁମାରୀ ହାରଟିକୁ ପେଡ଼ିରୁ ବାହାର କରି ରାଜକୁମାରର ଛାତିରେ ଥୋଇଦେଲା । ସଙ୍ଗେ ସଙ୍ଗେ ରାଜକୁମାର କଡ଼ ଲେଉଟାଇବା ମଧ୍ୟ ଦେଖାଗଲା ।

ଶଙ୍କୁତକୁମାରୀ ହାତରୁ ହାରଟିକୁ ପୁନର୍ବାର ସେହି ପେଡ଼ିରେ ରଖିଦେଲା । ଚାଲି ଚାଲି ଆସିବା ଯୋଗୁଁ ତା ପୋଷାକରେ ଧୂଳି ଲାଗି ମଇଳା ହୋଇ ଯାଇଥିଲା । ଏଣୁ ସେ ଭାବିଲା ଯେ ରାଜକୁମାର ଉଠିବା ପୂର୍ବରୁ ସ୍ନାନ କରି

ରାଜମହଲରୁ ସୁନ୍ଦର ବସ୍ତ୍ର ପିନ୍ଧି ସେ ବଡ଼ ସୁନ୍ଦର ହୋଇଯିବ ।

ସେ ଉତ୍ତମ ବସ୍ତ୍ର ଧରି ପାଖରେ ଥିବା ପୋଖରୀକୁ ଯାଇ ସ୍ନାନ କଲା ।

ସ୍ନାନ କରୁଥିବା ସମୟରେ ଶଙ୍କୁତକୁମାରୀ ଦେଖିଲା ଯେ ଗୋଟିଏ କୁଜ ସ୍ତ୍ରୀ କାନ୍ଦି କାନ୍ଦି ରାସ୍ତାରେ ଯାଉଥିଲା । କୁଜ ଦେଖିବାକୁ ବଡ଼ ଅସୁନ୍ଦରୀ ଥିଲେ ମଧ୍ୟ ଶଙ୍କୁତକୁମାରୀ ତା ଦୁଃଖ ଦେଖି ପଚାରିଲା—"ତୁ କେଉଁଠାକୁ ଯାଉଛୁ ? କାନ୍ଦୁଛୁ କାହିଁକି ?"

"ମୋର ସ୍ୱାମୀ ମତେ ଘରୁ ବାହାର କରିଦେଲା, ମୁଁ କୌଣସି ସିଂହ ମୁହଁକୁ ଯିବି ? ନଚେତ୍ ଏବେ ଆଉ କମିତ ଦିନ କାଟିବି ?" କୁଜ ଦୁଃଖ ମନରେ କହିଲା ।

"ତୁ ଚିନ୍ତା କରନାହିଁ । ତୋର ପାଳନ-ପୋଷଣ ଭାର ମୋ ଉପରେ । ତୁ ସେହି ମହଲ ପାଖକୁ ଯାଇ ଅପେକ୍ଷା କର, ମୁଁ ଏହିକ୍ଷଣି ସ୍ନାନ କରି ଆସୁଛି ।" ଶଙ୍କୁତକୁମାରୀ କହିଲା ।

କୁଜ ରାଜମହଲକୁ ଯାଇ ରାଜକୁମାରର କକ୍ଷକୁ ଚାଲିଗଲା । ଉକ୍ତ କକ୍ଷରେ ସେହି ହାରଟି ଦେଖି ତା ମନରେ ମଧ୍ୟ ସନ୍ଦେହ ହେଲା । ସେ ପେଡ଼ିରୁ ହାରଟି ବାହାର କରି ରାଜକୁମାର ବେକରେ ଲମ୍ବାଇ ଦେଲା । ତତ୍କ୍ଷଣାତ୍ ରାଜକୁମାର ଓ ତାର ଅନୁଚରମାନେ ନିଦରୁ ଉଠିଲେ । ନିୟମାନୁସାରେ ନିଦ୍ରାରୁ ଉଠାଇଥିବା କୁଜ ସହ ରାଜକୁମାର ବିବାହ କରିବା ପାଇଁ ଠିକ୍ କଲା ।



"ମୁଁ ଜଣେ ରାଜକୁମାରୀ, ମୋର ଦାସୀ ଏହିକ୍ଷଣି ଆସିଯିବ।" କୁଜ ରାଜକୁମାରକୁ କହିଲା।

ଅଳ୍ପ ସମୟ ପରେ ଶଙ୍କୁତକୁମାରୀ ସେଠାକୁ ଆସି ରାଜମହଲର ସମସ୍ତଙ୍କୁ ଦେଖି ଜାଣି ପକାଇଲା ଯେ ସେ ଠକାମିରେ ପଡ଼ିଛି। ଶଙ୍କୁତକୁମାରୀ ସେଠାରେ ପହଞ୍ଚିବା ମାତ୍ରେ କୁଜ ରାଜକୁମାରକୁ କହିଲା—"ଇଏ ମୋର ଦାସୀ।"

ଶଙ୍କୁତକୁମାରୀ କୁଜକୁ ନିନ୍ଦାକରି ରାଜ-କୁମାରକୁ ସବୁକଥା ବୁଝାଇଲା।

ଏହାଦେଖି ରାଜକୁମାର କହିଲା—"ମୁଁ ବୁଝିପାରୁନାହିଁ ତୁମ ଦୁଇଜଣଙ୍କ ମଧ୍ୟରୁ କିଏ ରାଣୀ ଓ କିଏ ଦାସୀ ଓ କିଏ କାହାକୁ ଠକୁଛି? ମୁଁ ଏବେ ନିଦରୁ ଉଠିଲି, ମୁଁ ଉଠିବା ମାତ୍ରେ ଏହି କୁଜକୁ ଦେଖିଲି। ମୁଁ ଭାବୁଛି ଯେ ଏହାର ମୁଁ ରାଣୀ ହେଲି।"

"ମୁଁ ବର୍ତ୍ତମାନ ପ୍ରମାଣ କରାଇ ଦେବି ଯେ କିଏ ରାଣୀ ଓ କିଏ ଦାସୀ? ମୁଁ କେତେକ କାଗଜରେ 'ରାଣୀ' ତଥା 'ଦାସୀ' ଲେଖି ପେଢ଼ିରେ ରଖିବି। ଆଖି ବନ୍ଦକରି "ରାଣୀ" ଲିଖିତ ସବୁ କାଗଜ ବାହାର କରିଦେବି। ଯେଉଁ ବଳକା କାଗଜ ରହିବ ପ୍ରତ୍ୟେକରେ "ଦାସୀ" ଲେଖା ହୋଇଥିବ।"

ଏହି ଶର୍ତ୍ତକୁ ରାଜକୁମାର ଗ୍ରହଣ କଲା।

ଶଙ୍କୁତକୁମାରୀ କେତେକ କାଗଜ ଖଣ୍ଡରେ 'ରାଣୀ' ତଥା 'ଦାସୀ' ଅଲଗା ଅଲଗା ଲେଖି ଗୋଟିଏ ପେଢ଼ିରେ ପକାଇ ଆଖି ବନ୍ଦକରି 'ରାଣୀ' ଲେଖା ହୋଇଥିବା ସବୁ



କାଗଜ ଖଣ୍ଡ ବାହାର କଲା । ଯାହା ବଳକା ଖଣ୍ଡ ରହିଲା ପ୍ରତ୍ୟେକଟିରେ 'ଦାସୀ' ଲେଖା ହୋଇଥିଲା ।

ଏହାଦେଖି ଭୟରେ କୁଜିର ଦେହ ଥରି ଉଠିଲା । ସେ ନିଜ ଅପରାଧ ସ୍ୱୀକାର କଲା । ଶଙ୍କୁତିକୁମାରୀ ତାକୁ କ୍ଷମା ଦେଇ ଦାସୀ ରୂପେ ପାଖରେ ରଖିଲା । ତା ପରେ ରାଜକୁମାର ଓ ଶଙ୍କୁତିକୁମାରୀ ଆଡ଼ମ୍ବର ସହ ବିବାହ କାର୍ଯ୍ୟ ପୂର୍ଣ୍ଣ କଲେ । ସେହି ବିବାହରେ ଭାଗ ନେବାପାଇଁ ବୈଶାଳୀ ନଗରରୁ ଶଙ୍କୁତିକୁମାରୀର ମା-ବାପା ତଥା ଅନ୍ୟାନ୍ୟ ବନ୍ଧୁ-ବାନ୍ଧବ ଆସି ପହଞ୍ଚିଲେ । ପିଲାବେଳୁ ହଜି ଯାଇଥିବା ଅମୂଲ୍ୟ କନ୍ୟାକୁ ପାଇ ମା-ବାପାଙ୍କର ଆନନ୍ଦର ସୀମା ରହିଲା ନାହିଁ ।

ଏହାପରେ ଶଙ୍କୁତିକୁମାରୀ ନିଜର ସବୁକଥା ମା-ବାପାଙ୍କୁ କହିଲା । ଏହାଶୁଣି ତା ମା ବିସ୍ମୟ ହୋଇ ପଚାରିଲା—"ପ୍ରକୃତ କାଗଜ ଖଣ୍ଡ ବାହାର କରିବାପାଇଁ ତୁ ନିଶ୍ଚୟ କୌଣସି ବିଚକ୍ଷଣ ଉପାୟ ପ୍ରୟୋଗ କରିଥିବୁ ! ସେ କି ଉପାୟ ?"

ଶଙ୍କୁତିକୁମାରୀ ହସିଦେଇ କହିଲା—"ମା, ପ୍ରତ୍ୟେକ କାଗଜକୁ ମୋଡ଼ି ମୁଁ କଇଁଚି ଦ୍ୱାରା ତିନି ଭାଗରେ କାଟିଦେଲି । ସେଥିରେ ଥିବା ପ୍ରତ୍ୟେକ ଖଣ୍ଡର ମଝି ଭାଗରେ 'ରାଣୀ' ତଥା ଅନ୍ୟ ଦୁଇ ଭାଗରେ 'ଦାସୀ' ଲେଖି ପ୍ରତ୍ୟେକ ଖଣ୍ଡକୁ ପୁଣି ତିନିଖଣ୍ଡ କରି ଚିରିଦେଲି । "ରାଣୀ" ଲେଖା ଯାଇଥିବା କାଗଜର ମଝି ଖଣ୍ଡଟି ଚିରିବା ଫଳରେ ଉଭୟ ପାଖ ଖଦଡ଼ା ଥିଲା । କିନ୍ତୁ 'ଦାସୀ' ଲେଖା ଯାଇଥିବା ପ୍ରତ୍ୟେକ କାଗଜ ଖଣ୍ଡର ଏକପାଖ ଚିକ୍କଣ ଥିବା ସମୟରେ ଅନ୍ୟ ପାଖଟି ଖଦଡ଼ା ଥିଲା । ଏଣୁ 'ରାଣୀ' ଲେଖା ହୋଇଥିବା କାଗଜ ଖଣ୍ଡ ଗୁଡ଼ିକୁ ଆଙ୍ଗୁଠି ସାହାଯ୍ୟରେ ଜାଣିବା ସହଜ ଥିଲା । କୁଜି ମତେ ଠକିଥିଲା, ଏଣୁ ତା ବଦଳରେ ମୁଁ ମଧ୍ୟ ତାକୁ ଏପରି ଠକିବାକୁ ବାଧ୍ୟ ହେଲି ।"





# ସତ୍ୟର ଜୟ

ରାମପୁର ଗାଁରେ ମଙ୍ଗଳଦାସ ନାମରେ ଜଣେ ଜମିଦାର ଥିଲା । ସେ କ୍ରୋଧୀ ଥିଲା । କିନ୍ତୁ ତାର ଏକ ଉତ୍ତମ ଗୁଣ ଥିଲା । ସେ ବିଶ୍ୱାସ ସହ କାମ କରୁଥିବା ଲୋକଙ୍କ ପ୍ରତି ବଡ଼ ଦୟା ରଖୁଥିଲା ।

ମଙ୍ଗଳଦାସ ନିଜ ଜମି ଚାଷ କରିବା ପାଇଁ ଶ୍ୟାମ ଓ ସୁରଜ ନାମକ ଦୁଇଜଣ କୃଷକକୁ ନିଯୁକ୍ତ କଲା । ଶ୍ୟାମ ପରିଶ୍ରମୀ ଥିଲା । ସେ ସର୍ବଦା କିଛି ନା କିଛି କାମ କରୁଥିଲା । ମାତ୍ର ସୁରଜ ଠିକ୍ ଶ୍ୟାମର ବିପରୀତ ଥିଲା ।

ଯେଉଁଦିନ ସେମାନେ କାମରେ ଲାଗିଲେ, ଶ୍ୟାମ ସାଙ୍ଗେ ସାଙ୍ଗେ କାମରେ ଲାଗିଗଲା । ମାତ୍ର ସୁରଜ କାମ ଛାଡ଼ି କେଉଁଆଡ଼େ ଚାଲିଗଲା । ସନ୍ଧ୍ୟାକୁ କାମ ଶେଷ କରି ଶ୍ୟାମ ନିଜ ବଳଦ ପୋଖରୀକୁ ନେଇ ଗାଧୋଇ ନିଜେ ମଧ୍ୟ ଗାଧୋଇଲା । ସେତେବେଳେ ସୁରଜ ସେଠାକୁ ଆସି ନିଜ ଦେହରେ ଓ ବଳଦ ଦେହରେ କାଦୁଅ ଲଗାଇ ସିଧା ମାଲିକ ଘରେ ପ୍ରଥମେ ପହଞ୍ଚିଗଲା ।

ମଙ୍ଗଳଦାସ ସୁରଜକୁ ଦେଖି ଭାବିଲା ଯେ ସେ ଦିନସାରା ଅକ୍ଲାନ୍ତ ପରିଶ୍ରମ କରି ଫେରିଛି । ତେଣୁ ନିଜ ପତ୍ନୀକୁ କହିଲା—"ସୁରଜ ମନ ଲଗାଇ କାମ କରୁଛି, ତାକୁ ଭଲରୂପେ ଖାଇବାକୁ ଦିଅ ।"

ଶ୍ୟାମ ମଧ୍ୟ ସେଠାରେ ଆସି ପହଞ୍ଚିଲା । କିନ୍ତୁ ତାର ବଳଦ ଦେହରେ କାଦୁଅ ଲାଗି ନଥିଲା । ମଙ୍ଗଳଦାସ ଭାବିଲା ଯେ ଶ୍ୟାମ ମୋଟେ କାମ କରୁନାହିଁ ।

ସେହିଦିନ ଠାରୁ ସୁରଜକୁ ପୁରା ଖାଦ୍ୟ ଓ ଶ୍ୟାମକୁ ଅଧା ଖାଦ୍ୟ ମିଳିଲା ।

ମଙ୍ଗଳଦାସର କନ୍ୟା କମଳା ବଡ଼ ଚଞ୍ଚଳ ଥିଲା । ସେମାନେ ଖାଇବା ସମୟରେ ସେ



ଦେଖିଲା ଯେ ଶ୍ୟାମକୁ ପୁରା ଖାଦ୍ୟ ମିଳୁନଥିବା ସ୍ଥଳେ ସୁରଜକୁ ଅଧିକ ଖାଦ୍ୟ ମିଳୁଛି । କମଳା ଭାବିଲା ଯେ ବୋଧହୁଏ ତା ବାପା ପ୍ରକୃତରେ କିଏ ଭଲକାମ କରୁଛି ଜାଣି ପାରୁନାହାଁ । ଏହାର ପ୍ରକୃତ ତଥ୍ୟ ବାହାର କରିବାପାଇଁ ଦିନେ ସେ ଜମି ପାଖକୁ ଗଲା । ଜମିରେ ଶ୍ୟାମ କେବଳ କାମ କରୁଥିଲା ଓ ସୁରଜ ଗୋଟିଏ ଗଛତଳେ ଗାଢ଼ ନିଦରେ ଶୋଇଥିଲା ।

ଜମିଦାର ପରି କମଳା ପରିଶ୍ରମୀଙ୍କ ପ୍ରତି ଦୟା ରଖୁଥିଲା । ସେ ଶ୍ୟାମକୁ କାମ ବିଷୟରେ ପଚାରି ତାର କାମରେ ମୁଗ୍ଧ ହୋଇ ଘରକୁ ଫେରିଲା । ସେ ଜାଣିପାରିଲା ଯେ ସୁରଜ ବଳଦ ଓ ନିଜ ଦେହରେ କାଦୁଅ ବୋଳି ହୋଇ ମାଲିକଙ୍କୁ ଠକୁଛି ।

କମଳା ନିଜ ବାପାକୁ କହିଲା—"ବାପା, ସବୁ କୃଷିକାମ ଶ୍ୟାମ କେବଳ କରୁଛି । ସୁରଜ ଦିନସାରା ଗଛତଳେ ଶୋଇ ସନ୍ଧ୍ୟା ବେଳକୁ ଦେହରେ କାଦୁଅ ଲଗାଇ ଫେରୁଛି । ଏହା ଦେଖି ତୁମେ ଭାବୁଛ ଯେ ସୁରଜ ବହୁତ ପରିଶ୍ରମ କରୁଛି । ଏଣୁ ତାକୁ ପେଟ-ପୁରା ଖାଦ୍ୟ ଦିଆଉଛ । ତାର ଖାଦ୍ୟ ହଜମ ହେଉ ନଥିବାରୁ ସମୟେ-ସମୟେ ଉପବାସ ମଧ୍ୟ କରୁଛି । ମାତ୍ର ଅକ୍ଲାନ୍ତ ପରିଶ୍ରମ କରୁଥିବା ଶ୍ୟାମ ପେଟ-ପୁରା ଖାଇବାକୁ ନପାଇ କଣ୍ଟା ହୋଇ ଗଲାଣି ।"

ସେଦିନ ସନ୍ଧ୍ୟା ସମୟକୁ ସୁରଜ ଯେତେବେଳେ ଘରକୁ ଫେରିଲା ମଙ୍ଗଳାଦାସ ତାକୁ ପଚାରିଲା—"ତୁ କାମ-ଧନ୍ଦା ନକରି କିଣ ସନ୍ଧ୍ୟାକୁ ଦେହରେ କାଦୁଅ ଲଗାଇ ଘରକୁ ଫେରୁଛୁ ?"

"ସରକାର, ଆପଣ ଇମିତି କିଣ କହୁଛନ୍ତି? ମୁଁ ଦିନସାରା ଅକ୍ଲାନ୍ତ ପରିଶ୍ରମ କରୁଛି, ଆପଣଙ୍କୁ କିଏ ମିଛ କହୁଛି ?" ସୁରଜ କହିଲା ।

ସେତେବେଳେ ଶ୍ୟାମ ମଧ୍ୟ ଘରକୁ ଫେରିଲା । ମଙ୍ଗଳାଦାସ ତାକୁ ପଚାରିଲା—"ଶୁଣ, କିଣ ସୁରଜ ଦିନସାରା ପରିଶ୍ରମ କରୁଛି ?"

"ସୁରଜ କାମ କରିବା ମୁଁ କେବେହେଲେ ଦେଖିନାହିଁ ।" ଶ୍ୟାମ ଉତ୍ତର ଦେଲା ।

"ତୁ ଏକଥା ଆଜିପର୍ଯ୍ୟନ୍ତ ମତେ କାହିଁକି ଜଣାଇଲୁ ନାହିଁ ?" ମଙ୍ଗଳଦାସ ଶ୍ୟାମକୁ ପଚାରିଲା ।

"ଆପଣ ମତେ ପଚାରି ନାହାନ୍ତି, ଏଣୁ ମୁଁ ମଧ୍ୟ କହିନାହିଁ । ମୁଁ କଣ ତା ପ୍ରତି ଲକ୍ଷ୍ୟ ରଖିବା ପ୍ରହରୀ କି ?" ଶ୍ୟାମ ପଚାରିଲା ।

ଏପରି ଶୁଣି ମଙ୍ଗଳଦାସ ସୁରଜକୁ ପଚାରିଲା— "ମୋ ଝିଅ କହିଲା ଯେ ତୁ ଜମିରେ କାମ କରୁନାହୁଁ । ଏବେ ଶ୍ୟାମ ମଧ୍ୟ ତାହା କହିଲା । ଏଥିପାଇଁ କି ଉତ୍ତର ଦେବୁ ?"

ସୁରଜ ସଙ୍କୋଚ ନକରି କହିଲା— "ସରକାର, ଏହା ପ୍ରକୃତ କଥା ନୁହେଁ । ଆପଣଙ୍କ ଝିଅ ପ୍ରତିଦିନ ଜମି ପାଖକୁ ଯାଇ ଶ୍ୟାମ ସଙ୍ଗେ ପ୍ରେମାଳାପ କରୁଛନ୍ତି । ସେ ଦିହେଁ ଏପରି ଭାବ ଆପତ୍ତି ଉଠାଉଛନ୍ତି ଯେ ମୁଁ କାଳେ ସେମାନଙ୍କ ରହସ୍ୟ ଦାଣ୍ଡରେ ପ୍ରକାଶ କରିଦେବି ।"

ମଙ୍ଗଳଦାସ ତା କଥାକୁ ବିଶ୍ୱାସ କରି ଶ୍ୟାମକୁ ଖୁବ୍ ପିଟି କମଳାକୁ କହିଲା— "ଯଦି ପୁଣି କେବେ ତୁ ଜମି ପାଖକୁ ଯିବୁ, ମୁଁ ତୋ ଗୋଡ଼ ଭାଙ୍ଗିଦେବି ।" ସେହି ରାତିରେ ଶ୍ୟାମକୁ ଖାଇବାକୁ ଦେବାପାଇଁ ମନାକଲା ।

ନିଜ ଚାଲ ଚଳିବା ଦେଖି ସୁରଜ ବଡ଼ ଖୁସି ହୋଇ ଭାବିଲା ଯେ ଏଣିକି ମୋତେ ସେ ଡରିବା ଦରକାର ନାହିଁ ।

ସୁରଜ ମିଛକଥା କହିବା ଫଳରେ କମଳାର ମନ ବଦଳି ଗଲା । ଶ୍ୟାମ ଯେତେବେଳେ ନିଜ ମାଲିକ ଠାରୁ ମାଡ଼ ଖାଇଲା, କମଳା





ମନରେ ପ୍ରେମଭାବ ଜାତ ହେଲା । ସେଦିନ ରାତିରେ କମଳା ନିଜେ ଶ୍ୟାମକୁ ଖୁଆଇଲା । ଏହାପରେ ସେ ନିଜ ମାକୁ ସୁରଜର ଦୁଷ୍ଟପଣ ଓ ଶ୍ୟାମ ପ୍ରତି ଯେଉଁ ଅନ୍ୟାୟ ହେଲା, ସବୁକଥା ବୁଝାଇ କହିଲା—"ମା! ଶ୍ୟାମ ସତ୍ୟବାନ ଓ ଚରିତ୍ରବାନ । ସେ ଉତ୍ତମ କାମ କରୁଛି । ମୁଁ ପ୍ରତିଦିନ ଜମି ପାଖକୁ ଯାଇ ତା ସହିତ କଥା ହେଉନାହିଁ, ଏହିଥର ଯିବା ମୋର ଅବଶ୍ୟ ଭୁଲ ଥିଲା ।"

ନିଜ ଝିଅ ମନକଥା ମା ଜାଣି ପାରିଲା । ସକାଳୁ ଶ୍ୟାମ ଓ ସୁରଜ ଜମିକୁ ଯିବା ପରେ ସେ ନିଜ ପତିକୁ କହିଲା—"ନୂଆ ଚାକରଙ୍କୁ ରଖିବା ପରେ ଆପଣ ମୋଟେ ଜମି ପାଖକୁ ଯାଉ ନାହାନ୍ତି । ଥରେ ଅନ୍ତତଃ କାମ କିମିତି ଚାଲିଛି ଦେଖିଆସ ।"

ମଙ୍ଗଳଦାସଙ୍କୁ ପତ୍ନୀ କଥା ଭଲ ଲାଗିଲା ସେ ଦୁଇପହର ସମୟକୁ ଜମି ପାଖରେ ପହଞ୍ଚିଲା । ଶ୍ୟାମ ଏପରି କାମ କରୁଥିଲା ସତେକି ସେହି ଜମି ତାର । ସୁରଜ ଗଛତଳେ ଶୋଇଥିଲା । ସେ ଭାବିଲା ଯେ କମଳା ସତକଥା କହିଛି । କିନ୍ତୁ ସେ ବଡ଼ ଭୁଲ କରିଛି । କାମଚୋରକୁ ପୁରା ଖାଇବାକୁ ଦେଇ ପ୍ରକୃତ ପରିଶ୍ରମୀର ପେଟକାଟି ଦେଇଛି । ଅନ୍ୟାୟରେ ସୁରଜ କଥାରେ ଶ୍ୟାମ ବହୁତ ମାଡ଼ ଖାଇଲା ।

ମଙ୍ଗଳଦାସ ପଶ୍ଚାତାପ କରି ଘରକୁ ଫେରିଲା । ସେ ନିଜର ଭୁଲ କଥା ପତ୍ନୀକୁ କହିଲା । ମାତ୍ର ତାକୁ ଜଣା ନଥିଲା ଯେ ସେଥିପାଇଁ କି ପ୍ରାୟଶ୍ଚିତ କରିବାକୁ ହେବ ।

"ଆପଣ ପ୍ରତ୍ୟେକ କଥାରେ ଘାବରା ହୋଇ କିଛି ନା କିଛି କରି ବସୁଛନ୍ତି । କମଳ ମତେ ପ୍ରକୃତ କଥା କହିଛି । ଶ୍ୟାମ ଆମ ପରିବାରର ଏକ ସଦସ୍ୟ ପରି । ସେ ଚାଷକାମ ପରର ଭାବି କରୁନାହିଁ । ଆପଣ ତାକୁ ମାଡ଼ ଦେଲେ ମଧ୍ୟ ନିଜର ଭୁଲ ନଥାଇ ସେ ତୁନି ରହିଲା । ଆମର ମଧ୍ୟ ପୁଅ ନାହିଁ । ଝିଅର ବିବାହ ଆଉ କାହା ସହିତ କାହିଁକି କରିବା? ଶ୍ୟାମ ସହିତ ଆମ ଝିଅର ବିବାହ କରାଇଲେ ଉଭୟେ ଆମ ଆଖି ଆଗରେ ରହିବେ ।" ପତ୍ନୀ ବୁଝାଇଲା ।

ପତ୍ନୀକଥା ଶୁଣି ମଙ୍ଗଳଦାସ ଭାବିଲା ଯେ ତା ମନର ସକଳ ବ୍ୟଥା ଦୂର ହୋଇଗଲା । ସେଦିନ ସନ୍ଧ୍ୟାରୁ ଗୃହକର୍ମମାନେ ଫେରିବା ପୂର୍ବରୁ ସେ ସବୁ ଠିକ୍ କରି ରଖିଲା ।

ସନ୍ଧ୍ୟାରୁ ଯେତେବେଳେ ଶ୍ୟାମ ଓ ସୁରଜ ଫେରିଲେ ମଙ୍ଗଳଦାସ ସୁରଜକୁ କହିଲା— "ଆରେ ସୁରଜ, ତୁ ଶ୍ୟାମକୁ ତେଲ ମାଲିସ କରାଇ ଭଲଭାବେ ଗରମ ପାଣିରେ ଗାଧୋଇ ଦେ ।"

"ଆପଣ ଇମିତ କଣ କହୁଛନ୍ତି? ମୁଁ ଏହି ମୂର୍ଖକୁ ମାଲିସ କରିବି? ଦିନସାରା ହାଡ଼ଭଙ୍ଗା ପରିଶ୍ରମ କରି ଫେରୁଛି? ଏ କାମ ମୋ ଦ୍ୱାରା କଦାପି ହୋଇ ପାରିବ ନାହିଁ ।" ସୁରଜ ବିରକ୍ତ ହୋଇ ଜଣାଇଲା ।

"ଆରେ, ପାଟି ବନ୍ଦକରି ମୁଁ କହିବା ପ୍ରକାରେ କର, ନଚେତ୍ ତୋର ହାଡ଼ ଭାଙ୍ଗିଦେବି ।" ମଙ୍ଗଳଦାସ କ୍ରୋଧରେ ଏପରି ଗାଳିଦେଲା ।

ସୁରଜ ମାଲିକର କ୍ରୋଧ ଦେଖି ଶ୍ୟାମକୁ ଗରମ ପାଣିରେ ଗାଧୋଇ ଦେଲା । କିନ୍ତୁ ଶ୍ୟାମ ଏସବୁ କଥା ବୁଝିପାରିଲା ନାହିଁ ।

ସ୍ନାନ ସରିବା ପରେ ମଙ୍ଗଳଦାସ ଶ୍ୟାମକୁ ନିଜ ପାଖରେ ଖାଇବାପାଇଁ ବସାଇଲା । ଶ୍ୟାମ ମଙ୍ଗଳଦାସକୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା । ଏହାଦେଖି ମଙ୍ଗଳଦାସ ଶ୍ୟାମକୁ କହିଲା— "ଆରେ ଶ୍ୟାମ, ତୁ ମୋର ଜୋଇଁ ।"

ସେତେବେଳେ ଶ୍ୟାମ ପ୍ରକୃତ କଥା ବୁଝି ପାରିଲା । ଏହାପରେ ଉତ୍ତମ ମୁହୂର୍ତ୍ତ ଓ ଲଗ୍ନ ଦେଖି ମଙ୍ଗଳଦାସ ନିଜ କନ୍ୟାର ବିବାହ ଶ୍ୟାମ ସଙ୍ଗେ କରାଇ ଦେଲା ।

ସେତେବେଳେ ସୁରଜକୁ ଜଣା ପଡ଼ିଲା ଯେ ପରିଶ୍ରମୀ ତଥା ସତ୍ୟବାନ ସର୍ବଦା ସୁଖୀ ହୋଇଥାଏ, ଏଣୁ ସେହିଦିନ ଠାରୁ ସୁରଜ ମଧ୍ୟ ଠିକ୍ ଭାବେ ପରିଶ୍ରମ କଲା । ତାର ଏପରି ପରିବର୍ତ୍ତନ ଦେଖି ମଙ୍ଗଳଦାସ ମଧ୍ୟ ବଡ଼ ପ୍ରସନ୍ନ ହେଲା ।





# ଅସଭ୍ୟ

ପୂର୍ବ ଯୁଗରେ ବାଗଦାଦ ନଗରରେ ଅହମଦ ନାମକ ଖଲିଫା ଶାସନ କରୁଥିଲେ । ତାଙ୍କ ମନରେ ଅନେକ ଦେଶ ଜୟକରି ବାଦଶାହ ହେବାପାଇଁ ପ୍ରବଳ ଇଚ୍ଛା ଥିଲା । ମାତ୍ର ତାଙ୍କ କନ୍ୟା ମେହରକୁ ବାପାଙ୍କ ଏହି ଦୁରାଶା ମୋଟେ ପସନ୍ଦ ନଥିଲା । କିନ୍ତୁ ଏହିକଥା ବାପାଙ୍କୁ କହିବାପାଇଁ ତାର ସାହାସ ନଥିଲା ।

ଖଲିଫା କେତେଦିନ ପରେ ନିଜ ଝିଅର ବିବାହ କରିବାକୁ ଚାହିଁଲା । ଏହିକଥା ଶୁଣିବା ମାତ୍ରେ ଅନେକ ଯୁବକ ମେହରକୁ ବିବାହ କରିବାକୁ ଆସିଲେ ।

"ମୋ ସହିତ ବିବାହ ହେବାପାଇଁ ଆସିଥିବା ପ୍ରତ୍ୟେକ ଯୁବକଙ୍କୁ ମୁଁ ଗୋଟିଏ ପ୍ରଶ୍ନ କରିବି, ସେଥିର ସଠିକ୍ ଉତ୍ତର ଯେଉଁ ଯୁବକ ଦେବ, ମୁଁ ତାକୁ ବିବାହ କରିବି ।" ମେହର ବାପାଙ୍କୁ କହିଲା । ଖଲିଫା ହଁ କଲେ । ପ୍ରଶ୍ନର ଉତ୍ତର ଦେଇ ନପାରିଲେ ଇଜ୍ଜତ ହାନିହେବା ଭୟରେ ଅନେକ ଯୁବକ ନିଜ ଚେଷ୍ଟାରୁ ବିରତ ରହିଲେ । ମାତ୍ର ଆଉ ଜଣେ ସୁଲତାନର ପୁଅ ରଜାକ ଉତ୍ତର ଦେବାକୁ ପହଞ୍ଚିଲା ।

ରାଜସଭାରେ ମେହର ରଜାକକୁ ଏହି କାହାଣୀ ଶୁଣାଇଲା ।

ବହୁବର୍ଷ ପୂର୍ବେ ମିଶରରେ ଅବ୍ଦୁଲ ସମଦ ନାମକ ସୁଲତାନ ଶାସନ କରୁଥିଲା । ସେ ଚକ୍ରବର୍ତ୍ତୀ ହେବାକୁ ଇଚ୍ଛାକରି ଏକ ପ୍ରବଳ ସେନାସହ ଅନ୍ୟ ଦେଶକୁ ଆକ୍ରମଣ କରିବାପାଇଁ ବାହାରିଲା । ଆଫ୍ରିକାରେ ଅନେକ ରଜାଙ୍କର ତା ସଙ୍ଗେ ଲଢ଼ିବା ପାଇଁ ଶକ୍ତି ନଥିଲା । ଏଣୁ ସେମାନେ ତାର ସାମନ୍ତ ରଜାହୋଇ ରହିଲେ ।

ମାତ୍ର ବେନ୍‌ସୁଫା ନାମକ ଜଣେ ବ୍ୟକ୍ତି ଅବ୍ଦୁଲର ଅଧୀନତା ସ୍ୱୀକାର ନକରି ଯୁଦ୍ଧ କରିବା ପାଇଁ ନିଷ୍ପତ୍ତି କଲା । ତା ସାରା ରାଜ୍ୟ

ପାହାଡ଼ ତଥା ଜଙ୍ଗଲରେ ପୂର୍ଣ୍ଣ ଥିଲା । ତା ସୈନିକମାନେ ମଧ୍ୟ ଜଙ୍ଗଲୀ ଥିଲେ । ସେମାନେ ପାହାଡ଼ ତଥା ଜଙ୍ଗଲରୁ ଅଗ୍ରଗାମୀ ମିଶରର ସୈନିକଙ୍କୁ ଆକ୍ରମଣ କରି କେତେକଙ୍କୁ ନିଜ ବିଷଥିବା ବାଣଦ୍ୱାରା ମାରି ଧାଇଁ ପଳାଉଥିଲେ । ସେମାନଙ୍କ ସଙ୍ଗେ ମୁହାଁ-ମୁହିଁ ଯୁଦ୍ଧ କରିବା ଅବ୍‌ଦୁଲର ସୈନିକଙ୍କ ପକ୍ଷେ ଅସମ୍ଭବ ଥିଲା ।

ବାସ୍ତବରେ ବେହ୍‌ସୁଫା ରାଜ୍ୟ ଜୟକଲେ ସୁଲତାନର ବିଶେଷ ଲାଭ ହୋଇ ନଥାନ୍ତା । ମାତ୍ର ତାର ଜିଦ୍ ଥିଲା ଯେ ଯେଉଁ ଶାସକ ତା ଆଧିପତ୍ୟ ସ୍ୱୀକାର ନ କରୁଛି, ତାକୁ ସ୍ୱାଧୀନ ହୋଇ ରହିବା ପାଇଁ ସୁଯୋଗ ଦେବାକୁ ହେବନାହିଁ ।

ଏହି କାରଣରୁ ଅବ୍‌ଦୁଲ ନିଜ ସୈନିକ ଦ୍ୱାରା ବେହ୍‌ସୁଫା ରାଜ୍ୟରେ ଥିବା ସବୁ ଜଙ୍ଗଲ କଟାଇ ଦେଲା ।

ଏପରି ଅବସ୍ଥା ଦେଖି ବେହ୍‌ସୁଫା ନିଜ ସୈନିକଙ୍କୁ ସାଙ୍ଗରେ ଧରି ଖୋଲା ପଡ଼ିଆରେ ଯୁଦ୍ଧ କରିବା ପାଇଁ ଆଗଭର ହେଲା । ଏହି ଲଢ଼େଇରେ ମିଶର ଜୟଲାଭ କଲା । ମାତ୍ର ବେହ୍‌ସୁଫାର ସୈନିକମାନେ ମିଶରର ଅନେକ ସୈନିକଙ୍କୁ ବୀରତ୍ୱର ସହ ମାରି ସ୍ୱର୍ଗଲାଭ କଲେ ।

ଯୁଦ୍ଧ ସରିବା ମାତ୍ରେ ଅବ୍‌ଦୁଲ ମନରେ ବେହ୍‌ସୁଫାର ଶବ ଦେଖିବାକୁ ଇଚ୍ଛା ହେଲା ।



ସେ କେତେକ ସୈନିକଙ୍କୁ ସାଙ୍ଗରେ ଧରି ଯୁଦ୍ଧଭୂମିରେ ପହଞ୍ଚିଲା ।

ଅଗ୍ରଗାମୀ ଶବ ମଝିରେ କିଏ ଜଣେ ଭୟଙ୍କର କଳା ଆକୃତି ବ୍ୟକ୍ତି ଠିଆହୋଇ ଚାରିଆଡ଼କୁ ଚାହୁଁ ଥିଲା ।

"ସେ କିଏ ?" ଅବ୍‌ଦୁଲ ନିଜ ସେନାପତିକୁ ପଚାରିଲା ।

"ଶୁଣିଛି ଯେ ଆଫ୍ରିକାର ଜଙ୍ଗଲରେ ମନୁଷ୍ୟ ମାଂସଖିଆ ଲୋକ ଅଛନ୍ତି । ଏଣୁ ସେ ମଧ୍ୟ ଶବଖିଆ ବ୍ୟକ୍ତି ହୋଇଥିବ ।" ସେନାପତି ଉତ୍ତର ଦେଲା ।

ଏହାପରେ ଅବ୍‌ଦୁଲ ସେହି ମାଂସଖିଆ ବ୍ୟକ୍ତିକୁ ପଚାରିଲା—"ଯେତେ ଶବ ଖାଇବାକୁ

ଇଚ୍ଛା ଖାଇ ଦେ । ତଥିଲ ନଖାଇ ଏପରି ତୁ ଗୃହପଟେ କଣ ଦେଖୁଛୁ ?"

"ଏମାନଙ୍କୁ ଖାଇବା ପାଇଁ କିଏ ମାରିଲା, ମତେ କେବଳ ଗୋଟିଏ ଶବ ଦରକାର । ଯିଏ ମାରିଛି ତାର ଅନୁମତି ନେଇ ଶବ ନେବା ନ୍ୟାୟ ସଙ୍ଗତ । ଏଣୁ ଏମାନଙ୍କୁ ମାରିବା ବ୍ୟକ୍ତିର ଅପେକ୍ଷାରେ ଗୃହପଟକୁ ମୁଁ ଦେଖୁଛି ।" କଳା ଲୋକଟି କହିଲା ।

ଏହାଶୁଣି ଅବ୍ଦୁଲ ହସିକରି କହିଲା—"ଏ ସମସ୍ତଙ୍କୁ ମୁଁ ମାରିଛି । ମାତ୍ର ଏମାନଙ୍କୁ ଖାଇବାପାଇଁ ନୁହେଁ, ବୁଝିଲୁ!"

କଳା ଲୋକଟି ଆଚମ୍ବିତ ହୋଇ ପଚାରିଲା—"ଯଦି ଖାଇବ ନାହିଁ, ତେବେ ଏତେ ଲୋକଙ୍କୁ କାହିଁକି ମାରିଲ ?"

ଏପରି ଶୁଣି ସୁଲତାନ ସେନାପତିକୁ କହିଲା—"ସେ ଜଣେ ଅସଭ୍ୟ, ଜଙ୍ଗଲୀ, ତାକୁ ବୁଝାଇବା ଆମ ପକ୍ଷେ ଅସମ୍ଭବ ।"

କଳା ଲୋକଟି ଠୋ ଠୋ ହସି ଚାଲିଗଲା ।

ମେହର ଏହି କାହାଣୀ ଶୁଣାଇ ରଜାକୁ ପଚାରିଲା—"କଳା ଲୋକଟି କାହିଁକି ହସିଲା ?"

"ଅସଭ୍ୟ ଓ ଜଙ୍ଗଲୀ ଦେଖାଯାଉଥିବା କଳା ଲୋକଟି ଭୋକ ହେଲେହିଁ ମନୁଷ୍ୟକୁ ମାରି ଦେଉଛି । ମାତ୍ର ନିଜକୁ ସଭ୍ୟ କହୁଥିବା ଅବ୍ଦୁଲ ନିଜ ଅଧିକାର ବୃଦ୍ଧି କରିବାପାଇଁ ହଜାରେ ଲୋକଙ୍କ ପ୍ରାଣ ନେଲା । ଯଦି ସ୍ଥିର ଚିତ୍ତରେ ଭାବିବା ଜଣାଯିବ ଯେ ପ୍ରକୃତ ଅସଭ୍ୟ କିଏ । ଏଣୁ ସେହି କଳା ଲୋକଟି ହସିଦେଲା ।" ରଜାକ ଉତ୍ତର ଦେଲା ।

ମେହର ସ୍ୱୀକାର କଲା ଯେ ରଜାକ ତା ପ୍ରଶ୍ନର ଠିକ୍ ଉତ୍ତର ଦେଇଛି । ଏହାପରେ ଉଭୟଙ୍କ ବିବାହ କାର୍ଯ୍ୟ ଶେଷ ହୋଇଗଲା ।

ମେହର ଯେଉଁ କାହାଣୀ ଶୁଣାଇଲା ଓ ରଜାକ ଯେଉଁ ଉତ୍ତର ଦେଲା, ଶୁଣିବା ପରେ ଖଲିଫା ମନରୁ ଚକ୍ରବର୍ତ୍ତୀ ବାସନା ଚାଲିଗଲା । ଏହିପରି ମେହର ନିଜ ବାପାକୁ ଠିକ୍ ରାସ୍ତାକୁ ନେଇ ଆସିଲା ।





# ମହାଭାରତ

କୃଷ୍ଣ ଦ୍ୱାରକା ଯିବାପାଇଁ ବାହାରିବା ମାତ୍ରେ ଉପପ୍ଲବ୍ୟରେ ଯୁଧିଷ୍ଠିର, ବିରାଟ ତଥା ଅନ୍ୟ ରଜାମାନେ ଯୁଦ୍ଧପାଇଁ ପ୍ରସ୍ତୁତ ହେଲେ । ବିରାଟ ଓ ଦ୍ରୁପଦ ମିଶି ସବୁ ରଜାଙ୍କ ନିକଟକୁ ସନ୍ଦେଶ ପଠାଇଲେ ଯେ ସେମାନେ ନିଜ ମନ୍ତ୍ରୀ ଓ ବନ୍ଧୁବାନ୍ଧବଙ୍କୁ ସାଙ୍ଗରେ ନେଇ ଯେପରି ଚଞ୍ଚଳ ଆସିଯିବେ । ସନ୍ଦେଶ ପାଇ କେତେଲୋକ ପାଣ୍ଡବଙ୍କ ପ୍ରତି ସ୍ନେହଥିବା ଯୋଗୁଁ ଉପ୍‌ପ୍ଲବ୍ୟକୁ ଆସିବା ସଙ୍ଗେ ସଙ୍ଗେ ଆଉ କେତେ ରଜା ବିରାଟ ତଥା ଦ୍ରୁପଦଙ୍କ ପ୍ରତି ଶ୍ରଦ୍ଧା ଥିବାରୁ ଆସିଲେ ।

ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ ଯେତେବେଳେ ଜଣାପଡ଼ିଲା ଯେ ଉପପ୍ଲବ୍ୟରେ ପଞ୍ଚ ପାଣ୍ଡବ ଯୁଦ୍ଧପାଇଁ ପ୍ରସ୍ତୁତ ହେଉଛନ୍ତି, ସେମାନେ ନିଜ ମିତ୍ରମାନଙ୍କୁ ସନ୍ଦେଶ ପଠାଇଲେ । ଏହିପରି ଭବିଷ୍ୟତରେ ହେବାକୁ ଯାଉଥିବା କୁରୁ-ପାଣ୍ଡବ ଯୁଦ୍ଧ ବିଷୟରେ ସବୁ ଦେଶରେ ଜୋରରେ ପ୍ରଚାରିତ ହେଲା ।

ଏ ଭିତରେ ଦ୍ରୁପଦ ନିଜ ପୁରୋହିତଙ୍କୁ କୌରବଙ୍କ ପାଖକୁ ଦୂତ ରୂପେ ପଠାଇବାକୁ ସ୍ଥିରକରି କହିଲେ—"ହେ ପୁରୋହିତ, ତୁମେ ଜ୍ଞାନଶୀଳ! ଧୃତରାଷ୍ଟ୍ର ଓ ଯୁଧିଷ୍ଠିରଙ୍କ ସ୍ୱଭାବର ଲୋକ ତୁମେ ଭଲଭାବେ ଜାଣ । କୌରବ-ମାନେ ପାଣ୍ଡବଙ୍କୁ କପଟ ଠକିଛନ୍ତି ଧୃତରାଷ୍ଟ୍ର ମଧ୍ୟ ଜାଣନ୍ତି । ବିଦୁର ମନା କରୁଥିବା ସତ୍ତ୍ୱେ ନିଜ ପୁତ୍ର-ପ୍ରେମ ମୋହରେ ପଡ଼ି ସେ ଯୁଧିଷ୍ଠିରଙ୍କୁ ଜୁଆ ଖେଳିବା ସକାଶେ ଡକାଇ ପଠାଇଲେ । ଏବେ କୌରବମାନେ ପାଣ୍ଡବମାନଙ୍କୁ ରାଜ୍ୟ



ନଦେବା ପାଇଁ ଠିକ୍ କରିଛନ୍ତି । ତୁମେ ଧୃତରାଷ୍ଟ୍ରଙ୍କୁ ଧର୍ମ ଓ ନ୍ୟାୟକଥା କୁହ । ବିଦୁର ତୁମକୁ ସାହାଯ୍ୟ କରିବେ । ଯଦି ତୁମେ ପାଣ୍ଡବଙ୍କ ସଜ୍ଜନତା ତଥା ଦୁର୍ଯ୍ୟୋଧନର ଶଠତା ବିଷୟରେ ପ୍ରାଞ୍ଜଳ ଭାବେ ବର୍ଣ୍ଣନା କରିପାରିବ, ତାଙ୍କ ପକ୍ଷରେ ଥିବା ଲୋକମାନେ ଅଧର୍ମ ଓ ଅନ୍ୟାୟପୂର୍ଣ୍ଣ ଯୁଦ୍ଧରୁ ପଛଘୁଞ୍ଚା ଦେବେ । ସେମାନଙ୍କ ମଧ୍ୟରେ ମତଭେଦ ସୃଷ୍ଟି କରିବାହିଁ ତୁମର ପ୍ରଧାନ କର୍ତ୍ତବ୍ୟ । ମୋର ବିଶ୍ୱାସ ଅଛି ଯେ ଏହି କାମ ତୁମଦ୍ୱାରା ଅବଶ୍ୟ ହେବ । ଦୁର୍ଯ୍ୟୋଧନ ଇତ୍ୟାଦିଙ୍କ ଦ୍ୱାରା ତୁମର କୌଣସି କ୍ଷତି ହେବନାହିଁ । ଅତଏବ ତୁମେ କଦାପି ଡରିବ ନାହିଁ ।”

ଏହାପରେ ଦ୍ରୁପଦଙ୍କ ପୁରୋହିତ ନିଜ ଶିଷ୍ୟବୃନ୍ଦଙ୍କୁ ସାଥିରେ ନେଇ ହସ୍ତିନାପୁର ଅଭିମୁଖେ ବାହାରିଲେ ।

ତା ପରେ ପାଣ୍ଡବମାନେ ଅନ୍ୟ ରଜାମାନଙ୍କ ପାଖକୁ ଦୂତ ପଠାଇ ଅର୍ଜୁନଙ୍କୁ କୃଷ୍ଣଙ୍କ ପାଖକୁ ପଠାଇଲେ । ଗୁପ୍ତଚରଙ୍କ ଦ୍ୱାରା ଖବର ରଖୁଥିବା ଦୁର୍ଯ୍ୟୋଧନ ମଧ୍ୟ କେତେକ ସୈନ୍ୟଙ୍କୁ ସାଙ୍ଗରେ ନେଇ ନିଜେ ଦ୍ୱାରକାକୁ ଗଲ ଅର୍ଜୁନ ଓ ଦୁର୍ଯ୍ୟୋଧନ ଏକ ଦିନରେ ଦ୍ୱାରକାରେ ଯାଇ ପହଞ୍ଚିଲେ ।

ଉଭୟେ ଯେତେବେଳେ କୃଷ୍ଣଙ୍କ ମହଲରେ ପ୍ରବେଶ କଲେ, କୃଷ୍ଣ ଶୋଇଥିଲେ । କୃଷ୍ଣ ମୁଣ୍ଡ ପାଖରେ ଗୋଟିଏ ସୁନ୍ଦର ଆସନ ଥିଲ ଏଣୁ ଦୁର୍ଯ୍ୟୋଧନ ଯାଇ ଆସନଟିରେ ବ ପଡ଼ିଲ । ଦୁର୍ଯ୍ୟୋଧନ ପଛରେ ଅର୍ଜୁନ ଯା ହାତଯୋଡ଼ି କୃଷ୍ଣଙ୍କ ପାଦ ପାଖରେ ଠିଆହେଲେ

କିଛିକ୍ଷଣ ପରେ କୃଷ୍ଣ ନିଦରୁ ଉଠି ପ୍ରଥ ପାଦ ପାଖରେ ଠିଆ ହୋଇଥିବା ଅର୍ଜୁନ ଦେଖିଲେ । ତା ପରେ ଅତିଥିଙ୍କୁ ସତ୍କାର କ ସେମାନଙ୍କ ଆସିବାର କାରଣ ପଚାରିଲେ ।

ଏହାଶୁଣି ଦୁର୍ଯ୍ୟୋଧନ କହିଲ—“ କୃଷ୍ଣ! ମୋର ନିବେଦନ ଯେ ଆମମାନ ମଧ୍ୟରେ ହେଉଥିବା ଯୁଦ୍ଧରେ ତୁମେ ପକ୍ଷରେ ରହି ଆମକୁ ସାହାଯ୍ୟ କର । ତୁ ଦୃଷ୍ଟିରେ ମୁଁ ଓ ଅର୍ଜୁନ ସମାନ । ଉଭ ତୁମର ସମାନ ବନ୍ଧୁ ମଧ୍ୟ । ଏହାଛଡ଼ା



ତୁମ ପାଖକୁ ପ୍ରଥମେ ଆସିଅଛୁ । ଏଣୁ ମତେ ସାହାଯ୍ୟ କରିବା ତୁମର କର୍ତ୍ତବ୍ୟ ।"

ଏହାଶୁଣି କୃଷ୍ଣ କହିଲେ—"ଏ କଥା ସତ ଯେ ତୁମେ ପ୍ରଥମେ ଆସିଛ! କିନ୍ତୁ ମୁଁ ଅର୍ଜୁନଙ୍କୁ ପ୍ରଥମେ ଦେଖିଛୁ । ଏଣୁ ମୁଁ ଉଭୟଙ୍କୁ ସାହାଯ୍ୟ କରିବି । ପରନ୍ତୁ ଅର୍ଜୁନ ସାନ । ଏଣୁ ପ୍ରଥମେ ସେ ସାହାଯ୍ୟ ମାଗିବେ । ମୋ ପରି ଦଶଲକ୍ଷ ଯୋଦ୍ଧା ଅଛନ୍ତି । ସେମାନେ ଗୋଟିଏ ପକ୍ଷରେ ତଥା ମୁଁ ଅନ୍ୟ ପକ୍ଷରେ ରହିବି । ମୁଁ କହି ଦେଉଛୁ ଯେ ମୁଁ ମୋଟେ ଯୁଦ୍ଧ କରିବିନାହିଁ, କେବଳ ଉପଦେଶ ଦେବି । ଅର୍ଜୁନ, ତୁମେ କୁହ, ଏ ଦୁଇଟି ଶର୍ତ୍ତରୁ ତୁମେ କେଉଁଟିକୁ ପସନ୍ଦ କରୁଛ ?"

ଅର୍ଜୁନ କୃଷ୍ଣଙ୍କୁ ଠିକ୍ କଲେ । ଦୁର୍ଯ୍ୟୋଧନ ବଡ଼ ଆନନ୍ଦରେ ଦଶଲକ୍ଷ୍ୟ ଯାଦବ ଯୋଦ୍ଧାଙ୍କୁ ଗ୍ରହଣ କରିବାପାଇଁ ହଁ କଲା । ଏହାପରେ ଦୁର୍ଯ୍ୟୋଧନ ବଳରାମଙ୍କ ପାଖକୁ ଯାଇ ଯୁଦ୍ଧରେ ସାହାଯ୍ୟ କରିବାପାଇଁ ଅନୁରୋଧ କଲା ।

ବଳରାମ ଦୁର୍ଯ୍ୟୋଧନକୁ କହିଲେ—ଦୁର୍ଯ୍ୟୋଧନ, ମୁଁ ବିରାଟ ରାଜ୍ୟକୁ ଯେତେବେଳେ ବିବାହ ଦେଖିବାକୁ ଯାଇଥିଲି, ମୁଁ ଉଭୟ ପକ୍ଷକୁ ସମାନ ଭାବ ମତ ପ୍ରକାଶ କରିଥିଲି । ମାତ୍ର କୃଷ୍ଣ ମୋ ବିଚାରକୁ ପସନ୍ଦ କଲାନାହିଁ । ଏଣୁ ମୁଁ ସେତେବେଳେହିଁ ନିର୍ଣ୍ଣୟ କରିଦେଲି ଯେ ମୁଁ କୌଣସି ପକ୍ଷକୁ ସାହାଯ୍ୟ କରିବିନାହିଁ । ଏହାଛଡ଼ା ତୁମକୁ ଅନ୍ୟର ସାହାଯ୍ୟ କଣ ଆବଶ୍ୟକ ? ଯାଅ, କ୍ଷତ୍ରିୟ ଧର୍ମାନୁସାରେ ଯୁଦ୍ଧ କର ।"

ଦୁର୍ଯ୍ୟୋଧନ ଆନନ୍ଦରେ ବଳରାମଙ୍କୁ ଆଲିଙ୍ଗନ କଲା । ମନେ ମନେ ଏପରି ଅନୁଭବ କଲା ଯେପରି ତାର ବିଜୟ ହୋଇଛୁ । ତା ପରେ ସେ କୃତବର୍ମା ପାଖକୁ ଯାଇ ସାହାଯ୍ୟ ମାଗିଲା । କୃତବର୍ମା ତାକୁ ଏକ ଅକ୍ଷୌହିଣୀ ସୈନ୍ୟ ଦେଲା । ଏହିପରି ଦୁର୍ଯ୍ୟୋଧନ ନିଜ କାମ ସାରି ହସ୍ତିନାପୁରକୁ ଫେରି ଆସିଲା ।

ଦୁର୍ଯ୍ୟୋଧନ ଗିବା ପରେ କୃଷ୍ଣ ଅର୍ଜୁନକୁ ପଚାରିଲେ—"ମୁଁ କହିଲି ଯେ ଯୁଦ୍ଧ କରିବି ନାହିଁ । ତୁମେ ମତେ ଗ୍ରହଣ କରି ଅକ୍ଷୌହିଣୀ ସୈନ୍ୟଙ୍କୁ କାହିଁକି ଛାଡ଼ିଲ ?"




"ମୁଁ ଜାଣେ ଯେ ଆପଣ ନିଜେ ସେହି ସୈନ୍ୟମାନଙ୍କୁ ସହଜରେ ପରାସ୍ତ କରିପାରିବେ । ଅନ୍ୟ ଶତ୍ରୁମାନଙ୍କୁ ମୁଁ ନିଜେ ପରାସ୍ତ କରିଦେବି । ଆପଣ ଯୁଦ୍ଧ କରିବେ ଯଦି ଯଶ ପାଇବେ, କିନ୍ତୁ ମତେ କଣ ମିଳିବ? ମୋ ମନରେ ଯଶ ପାଇବା ଇଚ୍ଛା ଥିବାରୁ ଆପଣଙ୍କୁ ମାଗିଲି । ଆପଣଙ୍କୁ ମୋର ଗୋଟିଏ କାମ କରିବାକୁ ହେବ । ଆପଣ ମୋର ସାରଥି ହୁଅନ୍ତୁ । ଏହି ଇଚ୍ଛା ମୋର ଅନେକ ବର୍ଷରୁ ରହିଛି । ଆପଣ ମୋର ସାରଥି ହେଲେ ଦେବ-ରାକ୍ଷସ ମିଶିକରି ଯୁଦ୍ଧକଲେ ମଧ୍ୟ ପରାସ୍ତ କରିଦେବି । ଅତଏବ ମୋ ମନସ୍କାମନା ପୂର୍ଣ୍ଣ କରନ୍ତୁ ।" ଅର୍ଜୁନ କହିଲେ ।

"ମୁଁ ତୁମ ମନସ୍କାମନା ଅବଶ୍ୟ ପୂର୍ଣ୍ଣ କରିବି ।" ଏହାପରେ ଆଶ୍ୱାସନା ଦେଇ କୃଷ୍ଣ ଅର୍ଜୁନଙ୍କୁ ବିଦାୟ କରିଦେଲେ ।

ମଦ୍ରଦେଶ ଶାସକ ତଥା ନକୁଳ ଓ ସହଦେବଙ୍କ ମାମୁଁ ଶଲ୍ୟଙ୍କୁ ପାଣ୍ଡବଙ୍କ ଦୂତ ଯାଇ ଯୁଦ୍ଧ ଖବର ଦେଲା । ସେ ପାଣ୍ଡବଙ୍କୁ ସାହାଯ୍ୟ କରିବାପାଇଁ ଏକ ଅକ୍ଷୌହିଣୀ ସୈନ୍ୟ ଓ ନିଜ ପୁତ୍ରମାନଙ୍କ ସହ ବାହାରିଲେ । ମଦ୍ର-ଦେଶର ପୋଷାକ, ଅଲଙ୍କାର ତଥା ରଥ ଇତ୍ୟାଦି ଅତ୍ୟନ୍ତ ବିଚିତ୍ର ଧରଣର ଥିଲା । ଅସଂଖ୍ୟ ସୈନ୍ୟ ଓ ପରାକ୍ରମଶାଳୀ ଶଲ୍ୟ ସେହି ବିଚିତ୍ର ସୈନ୍ୟଙ୍କୁ ସାଥିରେ ନେଇ ଉପପ୍ଲବ୍ୟ ଅଭିମୁଖେ ଚାଲିଲେ ।

ଦୁର୍ଯ୍ୟୋଧନ ଗୁପ୍ତଚରଙ୍କ ଦ୍ୱାରା ଜାଣିପାରିଲା ଯେ ଶଲ୍ୟ ପାଣ୍ଡବଙ୍କୁ ସାହାଯ୍ୟ କରିବାପାଇଁ ଯାଉଛନ୍ତି । ଏଣୁ ସେ ନିଜ ଅନୁଚରଙ୍କ ଦ୍ୱାରା ଶଲ୍ୟ ବିଶ୍ରାମ କରୁଥିବା ସ୍ଥାନରେ ଅନେକ ଦାସ-ଦାସୀ ଖଟାଇଲା । ସେ ତମ୍ବୁ ଟାଣି ସେମାନଙ୍କ ସକାଶେ ସୁବିଧା କରାଇଲା । ସୁନ୍ଦର ଭୋଜନ ଓ ମନୋରଞ୍ଜନର ବ୍ୟବସ୍ଥା ମଧ୍ୟ କରାଗଲା । ଏଣୁ ଶଲ୍ୟଙ୍କ ଯାତ୍ରା ଅତ୍ୟନ୍ତ ସୁଖପ୍ରଦ ଥିଲା । ଶଲ୍ୟ ଯୁଧିଷ୍ଠିର ତା ସକାଶେ ଏସବୁ ପ୍ରବନ୍ଧ କରିଛନ୍ତି ଭାବି ନିଜ ଅନୁଚରମାନଙ୍କୁ କହିଲେ—"ମୋ ସକାଶେ ଏସବୁ ସୁବିଧା କରାଇଥିବା ଭଦ୍ର ବ୍ୟକ୍ତିଙ୍କୁ ଡାକିଆଣ, ସେ ଯେ କୌଣସି ବର ମାଗିଲେ ମଧ୍ୟ ମୁଁ ଦେବି ।"

ଏହିକଥା ଶୁଣି ଗୁପ୍ତବେଶରେ ଥିବା ଦୁର୍ଯ୍ୟୋଧନ ଶଲ୍ୟଙ୍କ ସମ୍ମୁଖକୁ ଆସିଲା । ଶଲ୍ୟ ଉପଯୁକ୍ତ ସତ୍କାର କରି ତାକୁ ପଚାରିଲେ—"ବାପ, ତୁମକୁ ଯାହା ଦରକାର, ମାଗ! ମୁଁ ଅବଶ୍ୟ ଦେବ ।"

ଏହାଶୁଣି ଦୁର୍ଯ୍ୟୋଧନ କହିଲା—"ମହାଶୟ, ଆପଣ ମୋ ସୈନ୍ୟବାହିନୀର ସେନାପତି ହୁଅନ୍ତୁ ।"

ଏହାପରେ ଶଲ୍ୟ ସ୍ୱୀକୃତି ପ୍ରଦାନକରି କହିଲେ—"ହେ ଦୁର୍ଯ୍ୟୋଧନ, ତୁମେ ଏବେ ଚାଲିଯାଅ । ମୁଁ ଯୁଧିଷ୍ଠିରଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ତୁମ ପାଖକୁ ଆସିବ ।"

"ଆପଣ ଯୁଧିଷ୍ଠିରଙ୍କ ସଙ୍ଗେ କଥାହୋଇ ଶୀଘ୍ର ଆସିବେ । ଆମର ବିଜୟ ଆପଣଙ୍କ ହାତରେ ରହିଲା ।" ଏହାକହି ଦୁର୍ଯ୍ୟୋଧନ ଶଲ୍ୟଙ୍କୁ ଆଲିଙ୍ଗନ କରି ହସ୍ତିନାପୁରକୁ ଫେରିଲା ।

ଏହାପରେ ଶଲ୍ୟ ଉପପ୍ଲବ୍ୟରେ ଥିବା ପାଣ୍ଡବଙ୍କ ସୈନ୍ୟ ଶିବିରରେ ପହଞ୍ଚିଲେ । ଯୁଧିଷ୍ଠିରଙ୍କ ଦ୍ୱାରା ଅତିଥି-ସତ୍କାର ପ୍ରାପ୍ତ କରି ନକୁଳ ଓ ସହଦେବକୁ ଆଲିଙ୍ଗନ କଲେ; ସେମାନଙ୍କୁ ନିଜ ପାଖରେ ବସାଇ ଯୁଧିଷ୍ଠିରଙ୍କୁ କହିଲେ—"ମହାରଜା, ସବୁ କୁଶଳ ନା? ଭଗବାନଙ୍କ କୃପାରୁ ଆପଣମାନେ ବନବାସ ଓ ଭୟଙ୍କର ଅଜ୍ଞାତବାସ ମଧ୍ୟ ପୂର୍ଣ୍ଣକରି ଦେଇଛନ୍ତି । ଯେଉଁମାନଙ୍କର ରାଜ୍ୟଚ୍ୟୁତ ହୋଇଯାଏ, ସେମାନଙ୍କୁ କଷ୍ଟ ଛଡ଼ା ସୁଖ କେଉଁଠାରେ ମିଳିବ? ତଥାପି ଏହି କଷ୍ଟ ଭୋଗିଥିବା ଯୋଗୁଁ କୌରବଙ୍କୁ ଯୁଦ୍ଧରେ ପରାଜିତ କରି ଆପଣମାନେ





ସୁଖ ପାଇବେ । ମତେ ଏହିକଥା ଦେଖି ଆନନ୍ଦ ଲାଗୁଛି ଏତେ କଷ୍ଟ ଉଠାଇ ମଧ୍ୟ ଆପଣ ତଥା ଆପଣଙ୍କ ଭାଇମାନେ ଆନନ୍ଦରେ ରହିଛନ୍ତି ।"

ଏହାପରେ ଶଲ୍ୟ ଯୁଧିଷ୍ଠିରଙ୍କୁ ଏହା ମଧ୍ୟ କହିଲେ ଯେ ରାସ୍ତାରେ ସେ ଦୁର୍ଯ୍ୟୋଧନଙ୍କୁ କପଟ ଯୁଦ୍ଧରେ ସାହାଯ୍ୟ ଦେବାପାଇଁ ବଚନ ଦେଇଛନ୍ତି ।

ସବୁକଥା ଶୁଣି ଯୁଧିଷ୍ଠିର କହିଲେ—"ମହାରଜା, ଆପଣ ଉତ୍ତମ କାର୍ଯ୍ୟ କଲେ । ଯିଏ ଯାହାକୁ ପ୍ରସନ୍ନ କଲା ତାର ଇଚ୍ଛା ପୂର୍ଣ୍ଣ କରିବା ବଡ଼ମାନଙ୍କ କର୍ତ୍ତବ୍ୟ । ମାତ୍ର ଆପଣଙ୍କୁ ମତେ ମଧ୍ୟ ଗୋଟିଏ ସାହାଯ୍ୟ କରିବାକୁ ହେବ । ଆପଣ ଯୁଦ୍ଧ କ୍ଷେତ୍ରରେ କୃଷ୍ଣ ସମାନ । କର୍ଣ୍ଣ ଓ ଅର୍ଜୁନ ମଧ୍ୟରେ ଯେବେ ଯୁଦ୍ଧ ହେବ, ଆପଣଙ୍କୁ କର୍ଣ୍ଣଙ୍କ ସାରଥି ହେବାକୁ ପଡ଼ିବ । ଏଥିରେ ମୋଟେ ସନ୍ଦେହ ନାହିଁ । କାରଣ ଅର୍ଜୁନଙ୍କ ସାରଥି କୃଷ୍ଣ ସମକକ୍ଷ ଆଉ କେହିନାହିଁ । ଏଣୁ କର୍ଣ୍ଣଙ୍କ ସାରଥ୍ୟ କରିବା ସମୟରେ ଅର୍ଜୁନଙ୍କୁ ରକ୍ଷାକରି କର୍ଣ୍ଣଙ୍କ ଉତ୍ସାହ ଭଙ୍ଗ କରନ୍ତୁ । ଆପଣଙ୍କୁ ଏତିକି ମୋର ଅନୁରୋଧ ।"

"ଆପଣ ଚିନ୍ତା କରନ୍ତୁ ନାହିଁ । ସୁଯୋଗ ପାଇବା ମାତ୍ରେ ଦୁଷ୍ଟ କର୍ଣ୍ଣକଥା ଦେଖିନେବି । ମୁଁ ଦେଖିବି ଯେପରି ଅର୍ଜୁନଙ୍କ ଅବଶ୍ୟ ବିଜୟ ହେବ ।" ଶଲ୍ୟ ଯୁଧିଷ୍ଠିରଙ୍କୁ ଏପରି ଆଶ୍ୱାସନା ଦେଲେ ।

ଏହାପରେ ଶଲ୍ୟ ପାଣ୍ଡବଙ୍କ କଷ୍ଟ ବିଷୟରେ ତର୍କକରି କହିଲେ ଯେ ସ୍ୱୟଂ ଇନ୍ଦ୍ର ମଧ୍ୟ କଷ୍ଟ ଭୋଗିଛନ୍ତି । ସେ ଏପରି କହିଲେ—"ପ୍ରଜାପତିଙ୍କୁ ଠକିବାପାଇଁ ଚେଷ୍ଟା କରୁଥିବା ଇନ୍ଦ୍ରଙ୍କୁ ପରାଜିତ କରିବାପାଇଁ ସେ ବିଶ୍ୱରୂପ ସୃଷ୍ଟି କଲେ । ବିଶ୍ୱରୂପର ତିନୋଟି ମୁଣ୍ଡ ଥିଲା । ସେ ଇନ୍ଦ୍ରପଦ ପାଇଁ ତପସ୍ୟା କଲେ । ଇନ୍ଦ୍ର ଡରିଯାଇ ବିଶ୍ୱରୂପଙ୍କ ତପସ୍ୟା ଭଙ୍ଗ କରିବା ପାଇଁ ଅନେକ ଅପ୍‌ସରାଙ୍କୁ ତାଙ୍କ ପାଖକୁ ପଠାଇଲେ । ମାତ୍ର ବିଶ୍ୱରୂପଙ୍କ ମନକୁ ବିଚଳିତ କରିପାରିଲେ ନାହିଁ ।

ତା ପରେ ସ୍ୱୟଂ ଇନ୍ଦ୍ର ବଜ୍ରାୟୁଧ ଦ୍ୱାରା ବିଶ୍ୱରୂପଙ୍କୁ ମାରିଦେଲେ । ଏହା ଫଳରେ

ଇନ୍ଦ୍ରଙ୍କ ଡର ବୁଲିଗଲା । ମାତ୍ର ଏହାଠାରୁ ବଳି ଏକ ବଡ଼ ସମସ୍ୟା ଆସି ତାଙ୍କ ଆଗରେ ପହଞ୍ଚିଲା ।

ନିଜ ପୁତ୍ରର ମୃତ୍ୟୁ ଇନ୍ଦ୍ର ହାତରେ ହେବାର ଜାଣି ପ୍ରଜାପତି କ୍ରୋଧହୋଇ ଇନ୍ଦ୍ରଙ୍କୁ ମାରିବା ପାଇଁ ବୃତ୍ରକୁ ସୃଷ୍ଟି କଲେ । ପ୍ରଳୟକାଳ ସୂର୍ଯ୍ୟସମ ବୃତ୍ର ପିତାଙ୍କ ଆଦେଶାନୁସାରେ ସ୍ୱର୍ଗକୁ ଯାଇ ଇନ୍ଦ୍ରଙ୍କୁ ଯୁଦ୍ଧପାଇଁ ଆହ୍ୱାନ କଲା । ନିରାୟୁଧ ବୃତ୍ର ଇନ୍ଦ୍ରଙ୍କ ଆୟୁଧକୁ ଉପେକ୍ଷା କରି ତାଙ୍କୁ ଧରି ଗିଳିଦେଲା । କିନ୍ତୁ ଯେତେବେଳେ ବୃତ୍ର ହାଇମାରି ପାଟି ଖୋଲିଲା, ସେହି ସମୟରେ ଇନ୍ଦ୍ର ବାହାରି ଆସିଲେ, ଯୁଦ୍ଧଭୂମି ଛାଡ଼ି ଧାଇଁ ପଳାଇଲେ ।

ଏହାପରେ ଇନ୍ଦ୍ର ଦେବତାଙ୍କୁ ସାଙ୍ଗରେ ନେଇ ବିଷ୍ଣୁଙ୍କ ପାଖକୁ ଗଲେ ଓ ବୃତ୍ରକୁ ମାରିବା ଉପାୟ କହିବାପାଇଁ ପ୍ରାର୍ଥନା କଲେ ।

ବିଷ୍ଣୁ ଇନ୍ଦ୍ରଙ୍କୁ ଏପରି ଉପଦେଶ ଦେଲେ— "ବୃତ୍ର, ବର୍ତ୍ତମାନ ମରିବନାହିଁ । ତୁମେ ପ୍ରଥମେ ତା ସଙ୍ଗେ ମିତ୍ରତା ସ୍ଥାପନ କର ।" ଏହାଶୁଣି ମହର୍ଷିମାନେ ବୃତ୍ର ପାଖକୁ ଯାଇ ବୁଝାଇଲେ— "ତୁମେ ଇନ୍ଦ୍ରଙ୍କୁ ଜୟକରି ପାରିବ ନାହିଁ । ଇନ୍ଦ୍ର ତୁମକୁ ଜୟକରି ପାରିବେ ନାହିଁ । ଏଣୁ ତୁମେ ଦୁଇଜଣ ସନ୍ଧିକରି ସୁଖରେ ରୁହ ।"

ବୃତ୍ର ତାଙ୍କ କଥାନୁସାରେ ଇନ୍ଦ୍ରଙ୍କ ସଙ୍ଗେ ସନ୍ଧିକରି ମିତ୍ର ରୂପେ ରହିଲା । ମାତ୍ର ଇନ୍ଦ୍ର ସୁଯୋଗ ଖୋଜୁଥିଲେ । ଦିନେ ବୃତ୍ର ସମୁଦ୍ର କୂଳରେ ଭ୍ରମଣ କରୁଥିବା ସମୟରେ ଇନ୍ଦ୍ର ନିଜ ବଜ୍ରାୟୁଧ ଦ୍ୱାରା ତାକୁ ମାରିଦେଲେ ।

ବିଶ୍ୱରୂପ ତଥା ବୃତ୍ରକୁ ମାରିବା ଯୋଗୁଁ ଯେଉଁ ପାପ ଇନ୍ଦ୍ରଙ୍କୁ ଲାଗିଲା, ତା ଫଳ ସ୍ୱରୂପ ତାଙ୍କ ମତି-ଭ୍ରମ ହେଲା ଓ ସେ ଲୁଚିରହି ବୁଲିବାକୁ ଲାଗିଲେ । ଇନ୍ଦ୍ରଙ୍କ ଏପରି ଅବସ୍ଥା ଦେଖି ଇନ୍ଦ୍ର ପଦପାଇଁ ଜଣକୁ ଖୋଜାଗଲା । ମହର୍ଷି ବୃନ୍ଦ ନହୁଷଙ୍କ ପାଖକୁ ଯାଇ ନିବେଦନ କଲେ ଯେ ସେ ଇନ୍ଦ୍ରପଦ ଗ୍ରହଣ କରି ତିନି ଲୋକର ଶାସକ ହୁଅନ୍ତୁ ।






ସ୍ୱାୟଂଭୁବ ମନୁ ଯୁଗରେ ଷାଠିଏ ହଜାର ବର୍ଷ ପର୍ଯ୍ୟନ୍ତ ବର୍ଷା ନହେବା ଯୋଗୁଁ ଭୟଙ୍କର ଦୁର୍ଭିକ୍ଷ ପଡ଼ିଲା । ପ୍ରଜାଙ୍କ ଜୀବନ ଅସ୍ତବ୍ୟସ୍ତ ହୋଇଗଲା । ଏପରି ଭୟଙ୍କର ଦୃଶ୍ୟ ଦେଖି ବ୍ରହ୍ମା ସଂସାରକୁ ସୁଧାର କରିପାରିବା ଭଳି ବ୍ୟକ୍ତିକୁ ରଜା କରିବା ପାଇଁ ସଂକଳ୍ପ କଲେ । ସେ ମନୁ ବଂଶର ରିପୁଞ୍ଜୟଙ୍କୁ ଅତ୍ୟନ୍ତ ଚରିତ୍ରବାନ ଓ ସଦାଚାରୀ ମନେ କଲେ । ବ୍ରହ୍ମା ରିପୁଞ୍ଜୟଙ୍କୁ କହିଲେ—"ବାପ, ମୁଁ ତୁମକୁ ପୁରା ଅଧିକାର ଦେଉଛି । ତୁମେ ଦିବୋଦାସ ନାମରେ ପୃଥିବୀ ପାଳନ କରି ବାସୁକୀଙ୍କ କନ୍ୟା ଅନଙ୍ଗମୋହିନୀଙ୍କୁ ଧର୍ମପତ୍ନୀ ରୂପେ ସ୍ୱୀକାର କର ।"

ଏହାଶୁଣି ରିପୁଞ୍ଜୟ କହିଲେ—"ପିତାମହ, ଯଦି ଆପଣ ମତେ ଗୋଟିଏ ବରଦାନ ଦେବେ, ମୁଁ ପୃଥିବୀକୁ ଶାସନ କରିବା ଭାର ଗ୍ରହଣ କରିବି । ସେହି ବର ହେଉଛି ଯେ ପୃଥିବୀ ଉପରେ ଥିବା ତଥା ପାତାଳରେ ଥିବା ଲୋକଙ୍କ ବାସସ୍ଥଳ ଏକ ନ ହେଉ । ଯଦି ଆପଣ ଏପରି କରିବେ ମୁଁ ରାଜ୍ୟଭାର ଗ୍ରହଣ କରିବି ।"

ବ୍ରହ୍ମା ସ୍ୱୀକାର କରି ଏହି ସମାଚାର କାଶୀ ବିଶ୍ୱେଶ୍ୱରଙ୍କୁ ଶୁଣାଇଲେ । ବିଶ୍ୱେଶ୍ୱରଙ୍କ ମତନେଇ ରିପୁଞ୍ଜୟଙ୍କ ରାଜ୍ୟାଭିଷେକ କରି ବ୍ରହ୍ମା ନିଜ ଲୋକକୁ ଚାଲିଗଲେ । ରିପୁଞ୍ଜୟ ଦିବୋଦାସ ଉପାଧି ଧାରଣ କରି ଧାଣ୍ଡ୍ରା ପିଟାଇଲେ ଯେ ପୃଥିବୀ ଉପରେ ଦେବତା ତଥା ପାତାଳ ନିବାସୀ ଯେପରି ନ ରହନ୍ତି ।

ଏହି ଧାଣ୍ଡ୍ରା ଶୁଣି ପୃଥିବୀରେ ଥିବା ଦେବଗଣ କାଶୀ ବିଶ୍ୱନାଥଙ୍କ ପାଖକୁ ଧାଇଁଲେ । ସେମାନଙ୍କୁ ବିଶ୍ୱନାଥ କହିଲେ—"ବ୍ରହ୍ମା ମୋର ସ୍ୱୀକୃତି ନେଇ ଦିବୋଦାସଙ୍କୁ ଏହି ବର ପ୍ରଦାନ କରିଛନ୍ତି, ଏଣୁ ଆମେ ସମସ୍ତେ ମନ୍ଦର ପର୍ବତକୁ ଚାଲିଯିବା ।"

ଶେଷ ପୃଷ୍ଠାର ଚିତ୍ର



ପୃଥିବୀରୁ ଦେବଗଣ ଚାଲିଗଲେ । ମନ୍ଦିରରେ ପୂଜା ବନ୍ଦ ହୋଇଗଲା । ଏହାଦେଖି ଦିବୋଦାସ କାଶୀକୁ ନିଜ ରାଜଧାନୀ କରି ଆଠ ହଜାର ବର୍ଷ ପର୍ଯ୍ୟନ୍ତ ଶାସନ କଲେ । ଛୋଟ-ମୋଟ ଦେବତା ଓ ଦାନବ ଦିବୋଦାସଙ୍କ ପାଖରେ କାମ କଲେ ।

ପୃଥିବୀରୁ ଆଶ୍ରୟହୀନ ହୋଇ ଦେବଗଣ ବହୁତ ଦୁଃଖ କରି ନିଜ ଗୁରୁ ବୃହସ୍ପତିଙ୍କ ପାଖକୁ ଯାଇ ପଚାରିଲେ— "ଗୁରୁଦେବ! ଦିବୋଦାସକୁ ରାଜ୍ୟଚ୍ୟୁତ କରାଇବା ପାଇଁ ଏକ ଉପାୟ କହନ୍ତୁ ।"

ଅଗ୍ନି, ବାୟୁ ତଥା ବରୁଣ ଆମର ଭାଇ । ଯଦି ସେମାନେ ନିଜ ନିଜ ଶକ୍ତି ଫେରାଇ ଆଣିବେ ପୃଥିବୀ ସ୍ତମ୍ଭିତ ହୋଇଯିବ । ଲୋକମାନେ ରାନ୍ଧିପାରିବେ ନାହିଁ । ଯଜ୍ଞ ବନ୍ଦ ହେଲେ ବ୍ରାହ୍ମଣ ରଜାକୁ ଶାପ ଦେବେ । ଏଣୁ ତୁମ୍ଭେମାନେ ପ୍ରଥମେ ଅଗ୍ନିଙ୍କୁ ଅନୁରୋଧ କର ଯେ ପୃଥିବୀରେ ଥିବା ଲୋକଙ୍କ ସହିତ ସେ ସହଯୋଗ ଯେପରି କରିବେ ନାହିଁ ।" ବୃହସ୍ପତି ସେମାନଙ୍କୁ ବୁଝାଇଲେ ।

ପୁଣି କଣହେଲା ନା କାଶୀର କୌଣସି ସ୍ଥାନରେ ଅଗ୍ନିର ଦୃଶ୍ୟ ନାହିଁ । ରନ୍ଧା ହୋଇପାରିଲା ନାହିଁ । କିନ୍ତୁ ଲୋକମାନେ ଦିବୋଦାସଙ୍କୁ ଖର ପ୍ରଭାବରେ ରାନ୍ଧି ଖୁଆଇଲେ । ଏହାପରେ ପ୍ରଜାମାନେ ଆସି ଆପତ୍ତି ଉଠାଇଲେ । ପ୍ରକୃତ କଥା ଜାଣିପାରି ଦିବୋଦାସ କହିଲେ— "ଏହା ଦେବଗଣଙ୍କ କୁଟିଳ ନୀତି । ତୁମେମାନେ ବିଚଳିତ ହୁଅନାହିଁ । ମୁଁ ନିଜ ତପସ୍ୟା ବଳରେ ତୁମକୁ ଅଗ୍ନି, ବାୟୁ ତଥା ବର୍ଷା ପ୍ରଦାନ କରିବି ।" ପ୍ରଜାଗଣଙ୍କୁ ବୁଝାଇ ଦିବୋଦାସ ସେପରି କଲେ ।

ମାତ୍ର ଶିବଙ୍କୁ କାଶୀ ବିୟୋଗ ଅତ୍ୟନ୍ତ ଦୁର୍ଭର ହୋଇଗଲା । ସେ ତତ୍‌କ୍ଷଣି ସିଦ୍ଧ-ଯୋଗିନୀଙ୍କୁ ଡକାଇ କହିଲେ— "ତୁମେମାନେ ବେଶ ବଦଳାଇ କାଶୀର ସ୍ତ୍ରୀ ମାନଙ୍କ ପତିବ୍ରତା ତଥା ପୁରୁଷମାନଙ୍କ ଧର୍ମବୁଦ୍ଧି ନଷ୍ଟ କରିଦିଅ । ଫଳରେ ଦିବୋଦାସର ପତନ ହେବ ।"

ସିଦ୍ଧଯୋଗିନୀମାନେ ଶିବଙ୍କ ଆଦେଶ ପାଳନ କଲେ, ମାତ୍ର ସେମାନେ ସଫଳତା ଲାଭ କରି

ପାରିଲେ ନାହିଁ । ଏହାଦେଖି ଶିବ ସୂର୍ଯ୍ୟଙ୍କୁ କହିଲେ—"ତୁମେ କାଶୀ ଯାଇ ଦିବୋଦାସଙ୍କୁ ଧର୍ମଚ୍ୟୁତ କରିବାର ପ୍ରଯତ୍ନ କର ।"

ସୂର୍ଯ୍ୟ ଥରକୁ ଥର ବେଶ ବଦଳାଇ କାଶୀ ଭ୍ରମଣ କରି ଦିବୋଦାସଙ୍କୁ ଧର୍ମଚ୍ୟୁତ କରାଇବା ପାଇଁ ଚେଷ୍ଟା କଲେ । ମାତ୍ର ଦିବୋଦାସ ତଥା ତାଙ୍କ ପ୍ରଜାଙ୍କ ମନରେ ମଧ୍ୟ ଅଧର୍ମ ଚିହ୍ନ ଦେଖାଗଲା ନାହିଁ । ନିଜ କାର୍ଯ୍ୟ ପୂର୍ଣ୍ଣ ନକରି ସୂର୍ଯ୍ୟଙ୍କୁ ଫେରି ଆସିବା ଭଲ ଲାଗିଲା ନାହିଁ, ଏଣୁ ସେ କାଶୀରେହିଁ ରହିଗଲେ ।

ଏହାପରେ ଶିବ ବ୍ରହ୍ମାଙ୍କୁ ଡ଼କାଇ— କହିଲେ—"ମୁଁ ଦିବୋଦାସର ଧର୍ମଚ୍ୟୁତ କରାଇବା ପାଇଁ ଯୋଗିନୀ ଓ ସୂର୍ଯ୍ୟଙ୍କୁ ପଠାଇଲି, ମାତ୍ର ସମସ୍ତେ କାଶୀରେହିଁ ରହିଗଲେ । ଏହିଥର ତୁମେ ଯାଅ, ମାତ୍ର ସେଠାରେ ଯେପରି ରହି ନଯାଅ ।"

ବ୍ରହ୍ମା ସ୍ୱୀକୃତି ଦେଇ ବୃଦ୍ଧ ବ୍ରାହ୍ମଣ ବେଶରେ କାଶୀ ଗଲେ । ଦିବୋଦାସଙ୍କ ରାଜସଭାକୁ ଯାଇ ତାଙ୍କୁ ଆଶିର୍ବାଦ ଦେଇ କହିଲେ— "ରାଜା, ଯଦି ତୁମର ସ୍ୱୀକୃତି ମିଳିବ ମୁଁ କାଶୀରେ ଯଜ୍ଞ କରିବି । ମାତ୍ର ବିଶ୍ୱେଶ୍ୱରଙ୍କ ବିନା କାଶୀ ଶୋଭିଦେଖା ଯାଉନାହିଁ, ତାଙ୍କୁ ଡ଼ାକି ଆଣିବା ଭଲହେବ ।"

ଶିବଙ୍କୁ ଡ଼ାକିବା ବିଷୟରେ ଦିବୋଦାସ କିଛି କହିଲେ ନାହିଁ । ବ୍ରହ୍ମା ଦଶଥର ଅଶ୍ୱମେଧଯଜ୍ଞ କରି କାଶୀରେ ରହିଗଲେ ।



ବ୍ରହ୍ମାଙ୍କୁ ମଧ୍ୟ ନ ଫେରିବାର ଦେଖି ଶିବ ନିଜ ପ୍ରମଥଗଣଙ୍କୁ କାଶୀ ପଠାଇଲେ । କାଶୀର ମହତ୍ତ୍ୱ ଏପରି ଥିଲା ଯେ ସେମାନେ କାଶୀରେ ପହଞ୍ଚିବା ମାତ୍ରେ ନିଜ ଲକ୍ଷ୍ୟ ଭୁଲିଗଲେ । ତନ୍ମଧ୍ୟରୁ କପର୍ଦ୍ଦି ନାମକ ବ୍ୟକ୍ତି କାଶୀରେ କପର୍ଦ୍ଦିଶ୍ୱର ଲିଙ୍ଗ ସ୍ଥାପନ କଲେ ।

ମନ୍ଦର ପର୍ବତରେ ଥିବା ଶିବଙ୍କୁ କାଶୀ ସମାଚାର ମୋଟେ ମିଳିଲା ନାହିଁ । ଚିନ୍ତିତ ହୋଇ ସେ ବିନାୟକଙ୍କୁ ଡ଼କାଇ ସବୁକଥା କହି କାଶୀ ପଠାଇଲେ ।

ବିନାୟକ କାଶୀରେ ପହଞ୍ଚି ଅନେକ ଉପଦ୍ରବ ସୃଷ୍ଟି କଲେ । ସେ ଭିକାରୀ ରୂପେ ଲୋକଙ୍କୁ ଜ୍ୟୋତିଷ କହିଲେ । ସେ

ଶେଷରେ ଏହା ମଧ୍ୟ କହିଲେ ଯେ କାଶୀ ବିନାଶ ହେବା ସମୟ ଆସିଗଲା । ତା ପରେ ସେ ଦିବୋଦାସଙ୍କ ମହଲକୁ ଯାଇ ରଜାଙ୍କ ସବୁ ପ୍ରଶ୍ନର ଉତ୍ତର ଦେଇ ରାଜପୁରୋହିତ ହୋଇ ରହିଲେ ।

ଦିବୋଦାସ ପୁରୋହିତଙ୍କୁ ପଚାରିଲେ— "କାଶୀରେ ଏପରି ଉତ୍ପାତ କାହିଁକି ହେଉଛି ?"

"ରଜା, ମତେ ଜଣା ଯାଉଛି ଯେ ଆପଣଙ୍କୁ କେତେଦିନ ପର୍ଯ୍ୟନ୍ତ କାଶୀ ଛାଡ଼ିବା ଉତ୍ତମ ହେବ । ଅଠର ଦିନ ପରେ ଜଣେ ବ୍ରାହ୍ମଣ ଆସି ଆପଣଙ୍କୁ ଉଚିତ ହିତୋପଦେଶ ଦେବ ।" ବିନାୟକ ଉତ୍ତର ଦେଲେ ।

ଏହାପରେ ଶିବ ବିଷ୍ଣୁଙ୍କୁ କାଶୀ ପଠାଇଲେ । ବିଷ୍ଣୁ ବୁଦ୍ଧ ରୂପଧରି କାଶୀ ଲୋକଙ୍କ ମନରେ ନାସ୍ତିକ ମତ, ବୌଦ୍ଧ ତଥା ଜୈନଧର୍ମ ପ୍ରଚାର କଲେ । ଏହାପରେ ବ୍ରାହ୍ମଣ ବେଶ ହୋଇ ବିଷ୍ଣୁ ଦିବୋଦାସ ପାଖକୁ ଗଲେ । ତାଙ୍କୁ ଆଶିର୍ବାଦ ଦେଲେ । ଦିବୋଦାସ ତାଙ୍କୁ ପଚାରିଲେ— "ମହାତ୍ମା, ଦେବଗଣ ମତେ ନାନା ପ୍ରକାର କଷ୍ଟ ଦେଉଛନ୍ତି । ମୁଁ ମଧ୍ୟ ବହୁତ ଦିନ ଶାସନ କରି ବୃଦ୍ଧ ହୋଇ ଗଲଣି । ମୁଁ କିପରି ମୋକ୍ଷ ହେବି, ଆପଣ ମତେ କହନ୍ତୁ ।"

"ରଜା, ତୁମେ କାଶୀରେ ଲିଙ୍ଗ ପ୍ରତିଷ୍ଠା କଲେ ସ୍ୱଦେହରେ କୈଳାସକୁ ଚାଲିଯିବ ।" ବିଷ୍ଣୁ ବୁଝାଇଲେ ।

ବିଷ୍ଣୁଙ୍କ କହିବା ପ୍ରକାରେ ଦିବୋଦାସ ନିଜ ପୁତ୍ର ସମରଞ୍ଜୟଙ୍କ ରାଜ୍ୟାଭିଷେକ କରାଇ ଏକ ବଡ଼ ମନ୍ଦିର ନିର୍ମାଣ କରାଇ ସେଠାରେ ଲିଙ୍ଗ ପ୍ରତିଷ୍ଠା କଲେ । ଏହାପରେ ସ୍ୱଦେହରେ ବିମାନରେ ବସି କୈଳାସକୁ ଚାଲିଗଲେ । କାଶୀରୁ ଯାଇଥିବା ଦେବଗଣ ପୁନର୍ବାର ଆସିଲେ, ଶିବ ତାଙ୍କ ଶିବଗଣଙ୍କୁ ସାଙ୍ଗରେ ନେଇ କାଶୀରେ ପହଞ୍ଚିଲେ । ତା ପରେ ଶିବ ଅପାର ସନ୍ତୋଷ ଲାଭ କରି ଦିବୋଦାସଙ୍କ ବଂଶଧରଙ୍କୁ ଆଶିର୍ବାଦ ଦେଲେ ।



ସଂସାରର ଆଶ୍ଚର୍ଯ୍ୟ :

# "ଟ୍ରେବୀ ପ୍ରସ୍ରବଣ"

ରୋମ ନଗରରେ ଏହି ସ୍ରୋତସ୍ୱିନୀ ପ୍ରବାହିତ । ଲୋକଙ୍କ ବିଶ୍ୱାସ ଯେ ନଗରକୁ ଯାଉଥିବା ଯେ କୌଣସି ବ୍ୟକ୍ତି ଯଦି ସେଥିରେ ଗୋଟିଏ ମୁଦ୍ରା ପକାଇ ଦିଏ, ସେହି ମୁଦ୍ରାଟି ପୁନର୍ବାର ନଗରକୁ ଚାଲିଆସେ । ଏହି ପ୍ରଥା ଯୋଗୁଁ ମୁଦ୍ରା ସଂଗ୍ରହକାରୀ ଯୁବକମାନେ ବିଶେଷ ଲାଭ ଉଠାଇଥାନ୍ତି । ଜଳ ଉପରେ ବରୁଣଦେବ ରଥରେ ଉଡ଼ି ଯାଉଥିବା ଚିତ୍ର ଅଙ୍କିତ ହୋଇଅଛି ।



Photo by S. B. Takalkar



ପୁରସ୍କାର ପରିଚୟ

ହସି ଧରିଛି କୁକୁଡ଼ା ହାତେ

ପ୍ରେରିକା
ଡ. ବିଜୟ ଲକ୍ଷ୍ମୀ

Photo by S. B. Takalkar



ଗ୍ରା: ପୋ: ବଡ଼ଗଡ଼
ଜି: (ଗଞ୍ଜାମ) ଓଡ଼ିଶା

ବସି ଖେଳନ୍ତି ଛେଳର ସାଥେ

ପୁରସ୍କାର
ପରଚସ୍ଥ

# ଫଟୋ-ପରିଚୟ୍-ପ୍ରତିଯୋଗିତା ପୁରସ୍କାର ୨୦)





★ ପରିଚୟୋକ୍ତି ଜାନୁଆରୀ ମାସ ୫ ତାରିଖ ଭିତରେ ପଠାଇବାକୁ ହେବ ।

★ ପରିଚୟୋକ୍ତି ଦୁଇ-ତିନି ପଦରେ ଲେଖାଯିବ ଏବଂ ପରସ୍ପର ସମ୍ବନ୍ଧ ରହିବ, ପୁରସ୍କାର ପରିଚୟୋକ୍ତି ମାର୍ଚ୍ଚ ମାସରେ ପ୍ରକାଶିତ କରାଯିବ !

# ଜହ୍ନ ମାମୁଁ

## ଏହି ଅଙ୍କର କଥା-କାହାଣୀ-ହାସ୍ୟ-ରସ



ଦ୍ୱିତୀୟ ମୁଖପୃଷ୍ଠ :
ଚଣ୍ଡିଗଡ଼ ସରୋବର

ତୃତୀୟ ମୁଖପୃଷ୍ଠ :
ନୈନୀତାଲ ସରୋବର









ଆମେ
ସମସ୍ତେ
ପଢିବାକୁ ଭଲପାଉ



# ଚନ୍ଦାମାମୁଁ




ତେଣୁ ଆପଣ ବି ପଢନ୍ତୁ ।

ଚନ୍ଦାମାମାକୁ ପଢନ୍ତି ପୁରୁଷ, ସ୍ତ୍ରୀ, ପିଲାଛୁଆ ସମସ୍ତେ, ଦଶଟି ଭାଷାରେ ଯଥା : ଇଂରାଜୀ, ହିନ୍ଦୀ, ଓଡ଼ିଆ, ମରାଠୀ, ତେଲୁଗୁ, କନ୍ନଡ଼, ତାମିଲ, ଗୁଜରାଟୀ, ମାଲୟାଲମ, ବଙ୍ଗଳାରେ ପ୍ରକାଶ ପାଏ । ଶିଶୁମାନଙ୍କ ପାଇଁ ପାଇଁ ଉଦ୍ଦିଷ୍ଟ ଏହି ପତ୍ରିକାଟିରେ ରହିଥିବା ଗଳ୍ପଗୁଡ଼ିକ ସମସ୍ତଙ୍କର ମନ ହରିନେଇ ଥାଏ । ଚନ୍ଦାମାମା ଶିଶୁମାନଙ୍କ ପାଇଁ ଏକ ମାସିକ ପତ୍ରିକା ଯାହାକୁ ପଢ଼ିଲେ ବୁଢ଼ା ଭାବେ ମୁଁ ଯୁବକ ହେଲି ଯୁବକ ଭାବେ ମୁଁ ଜ୍ଞାନ ଅର୍ଜିଲି



ବାର୍ଷିକ ଗ୍ରାହକ ହେବାପାଇଁ ଯୋଗାଯୋଗ କରନ୍ତୁ! ଡଲ୍‌ଟନ୍ ଏଜେନ୍ସିଜ, ଚନ୍ଦାମାମା ବିଲ୍ଡିଂ, ମାଡ୍ରାସ-୨୬